# ବାଲେଶ୍ୱର

ଲେଖକ

ହରିଶ୍ଚନ୍ଦ୍ର ସରକାର

(୧୯୦୯)

ସଂପାଦନା

ଡ. ବ୍ରଜନାଥ ରଥ



ସୁବର୍ଣ୍ଣଶ୍ରୀ ପ୍ରକାଶିନୀ
ବାଲେଶ୍ୱର

# ବାଲେଶ୍ୱର

(ପଦ୍ୟାକାରେ ଲିଖିତ ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଇତିହାସ)

ପ୍ରଣେତା :

ହରିଶ୍ଚନ୍ଦ୍ର ସରକାର

ସମ୍ପାଦନା :

ଡ.ବ୍ରଜନାଥ ରଥ

ସୁନହଟ, ବାଲେଶ୍ୱର-୨

ପ୍ରଥମ ସଂସ୍କରଣ : ୧୯୦୯

ଦ୍ୱିତୀୟ ସଂସ୍କରଣ : ୨୦୧୧

*ପ୍ରକାଶକ :* କାଳୀପଦ ପଣ୍ଡା • ସୁବର୍ଣ୍ଣଶ୍ରୀ ପ୍ରକାଶିନୀ

ଶ୍ରୀକଣ୍ଠପୁର, ବାଲେଶ୍ୱର • *ମୋ:* ୯୪୩୭୦୮୯୨୪୧

*ମୂଲ୍ୟ :* ଟ.୬୦/-

---

# BALESWAR

by

**HARISHCHANDRA SARKAR**

**Edited by**

**Dr.BRAJANATH RATH**

Sunhat, Balasore-2, Odisha.

**First Edition** : 1909

**Second Edition** : 2011

**Publisher : Kalipada Panda • SUBARNASHREE RAKASHINI**

Srikanthapur, Balasore • **Mob :** 9437089241

**Price : Rs. 60 /-**

# 'ବାଲେଶ୍ୱର' ଓ ହରିଶ୍ଚନ୍ଦ୍ର ସରକାର

ବାଲେଶ୍ୱର ଏକ ବହୁ ପୁରାତନ ସ୍ଥାନ ହେଲେ ମଧ୍ୟ ଗତ ବିଂଶ ଶତାବ୍ଦୀର ଆଦ୍ୟ ଦଶକ ପର୍ଯ୍ୟନ୍ତ ଏହାର କୌଣସି ବିଧିବଦ୍ଧ ଇତିହାସ ବା ବିବରଣୀ ଲେଖା ଯାଇନଥିଲା । ୧୯୦୭ ମସିହା L.S.S.O' Malleyଙ୍କ ଦ୍ୱାରା ଲିଖିତ ଏହାର ପ୍ରଥମ ଜିଲ୍ଲା ଗେଜେଟିଅର (District Gazetteer) ପ୍ରକାଶିତ ହୋଇ ଏହି ଜିଲ୍ଲା ସଂପର୍କରେ ବହୁ ତଥ୍ୟ ଜନସାଧାରଣଙ୍କୁ ଜଣାଇବାରେ ସମର୍ଥ ହୋଇଥିଲା । ସେତେବେଳେ ବାଲେଶ୍ୱର ଓ ଭଦ୍ରକ ମିଶି ଗୋଟିଏ ଜିଲ୍ଲା ଥିଲା । ତେଣୁ ଏହି ଗେଜେଟିୟର ଯେଉଁ ବିବରଣୀ ପ୍ରଦାନ କରେ, ତାହା ଅବିଭକ୍ତ ବାଲେଶ୍ୱର ଜିଲ୍ଲାର । କିନ୍ତୁ ଓ' ମେଲିଙ୍କ ଏହି ପୁସ୍ତକ ଇଂରାଜୀରେ ଲିଖିତ ହୋଇଥିବାରୁ ବହୁ ଇଂରାଜୀ ଅନଭିଜ୍ଞ ସାଧାରଣ ପାଠକ ନିଜ ଜିଲ୍ଲା ସଂପର୍କରେ ସବିଶେଷ ତଥ୍ୟ ଜାଣିବାରୁ ବଞ୍ଚିତ ହେଉଥିଲେ । ବୋଧହୁଏ ଏହି ସମସ୍ୟାକୁ ଦୃଷ୍ଟିରେ ରଖି ୧୯୦୯ ମସିହାରେ ହରିଶ୍ଚନ୍ଦ୍ର ସରକାର ଓଡ଼ିଆ ଭାଷାରେ ପଦ୍ୟାକାରରେ 'ବାଲେଶ୍ୱର' ନାମକ ବହିଟିଏ ଲେଖି ପ୍ରକାଶ କଲେ ।

ସୁନହଟର ବିଖ୍ୟାତ ଜମିଦାର ସାମନ୍ତ ଶ୍ରୀ ରାଧାଚରଣ ଦାସଙ୍କ ଦ୍ୱାରା ପ୍ରକାଶିତ ଏହି 'ବାଲେଶ୍ୱର' ପୁସ୍ତକ 'ସାମନ୍ତ ପ୍ରେସ'ରେ ଏନ୍.ସି.ଘୋଷଙ୍କ ଦ୍ୱାରା ମୁଦ୍ରିତ ହୋଇଥିଲା । ସେତେବେଳେ ଏହାର ମୂଲ୍ୟ ଥିଲା ମାତ୍ର ଚାରିଅଣା, ଅର୍ଥାତ୍ ଆଜିର ପଚିଶ୍ ପଇସା । କ୍ରାଉନ୍ ୧୬ପୃଷ୍ଠା ଆକାରର ଏହି ପୁସ୍ତକର ପଦ୍ୟଭାଗ ୫୯ପୃଷ୍ଠା, ପରିଶିଷ୍ଟ (ଗଦ୍ୟ) ୩୫ ପୃଷ୍ଠା ଏବଂ ଇଂରାଜୀ ଭୂମିକା (Preface) ଦୁଇପୃଷ୍ଠା ମିଶି ମୋଟ ୯୬ ପୃଷ୍ଠା । ଲେଖକ ହରିଶ୍ଚନ୍ଦ୍ର ସରକାର ତତ୍‌କାଳୀନ ବାଲେଶ୍ୱର ଜିଲ୍ଲାର ମାଜିଷ୍ଟ୍ରେଟ୍ ଓ କଲେକ୍ଟର ବୀରେନ୍ଦ୍ର ଚନ୍ଦ୍ର ସେନ୍, ଆଇ.ସି.ଏସ୍‌ଙ୍କୁ ବହିଟି ନିଜେ 'ଉତ୍ସର୍ଗ' ନକରି ପ୍ରକାଶକ ତଥା ସାମନ୍ତ ପ୍ରେସର ସ୍ୱତ୍ୱାଧିକାରୀ ବାଲେଶ୍ୱର ଜିଲ୍ଲାର ବିଶିଷ୍ଟ ଜମିଦାର ସାମନ୍ତ ରାଧାଚରଣ ଦାସଙ୍କ ଦ୍ୱାରା କରାଇଛନ୍ତି । ଏହି ଉତ୍ସର୍ଗଲିପି ଓ ଆଦ୍ୟ ଭୂମିକା ଇଂରାଜୀରେ ଲେଖାଯାଇଛି । ବୋଧହୁଏ ଅଣଓଡ଼ିଆ ଜିଲ୍ଲାପାଳଙ୍କ ଗୋଚରାର୍ଥେ ଲେଖକ ଏହାକୁ ଇଂରାଜୀରେ ଲେଖିଛନ୍ତି । Preface ବା ଆଦ୍ୟ ଭୂମିକାରେ ଲେଖକ

ଇଂରାଜୀରେ ଯାହା ଲେଖିଛନ୍ତି, ତାର ଅବିକଳ ଓଡ଼ିଆ ଅନୁବାଦ ନିମ୍ନରେ ପ୍ରଦତ୍ତ ହେଲା-

"ଭାରତର ସର୍ବ ପୁରାତନ ଜିଲ୍ଲାମାନଙ୍କ ମଧ୍ୟରେ ବାଲେଶ୍ୱର ଅନ୍ୟତମ । ଗୋଟିଏ ପାଖରେ ପାହାଡ଼ ଓ ଅନ୍ୟ ପାଖରେ ସାଗର ବେଷ୍ଟିତ ଏହା ଏକ ଛବିଳ ସଂକୀର୍ଣ୍ଣ ଭୂଖଣ୍ଡ । ପ୍ରାଚୀନକାଳରୁ ଆଜି ପର୍ଯ୍ୟନ୍ତ ଭାରତ ଇତିହାସରେ ଏହାର ସ୍ଥାନ ସ୍ୱତନ୍ତ୍ର । ଆର୍ଯ୍ୟାବର୍ତ୍ତ ଓ ଦାକ୍ଷିଣାତ୍ୟ ମଧ୍ୟରେ ସଂଯୋଗପଥ ଭାବରେ ଏବଂ ରାମାୟଣ ଓ ମହାଭାରତ ଯୁଗର ପ୍ରାଚୀନ କୀର୍ତ୍ତିରାଜିରେ ଏହା ସମୃଦ୍ଧ । (ଆମେ ଯଦି ଆମର ପରଂପରା ଏବଂ ଜିଲ୍ଲାର ବିଭିନ୍ନ ଅଞ୍ଚଳରୁ ପ୍ରାପ୍ତ ଧ୍ୱଂସାବଶେଷ ଉପରେ ବିଶ୍ୱାସ ରଖୁ ।) ପରବର୍ତ୍ତୀ ସମୟରେ ହିନ୍ଦୁ ଓ ବୌଦ୍ଧମାନେ ଏଠାରେ ନିଜନିଜର ଧର୍ମୀୟ ଟେକ ବଜାୟ ରଖିବା ପାଇଁ ଯୁଦ୍ଧ କରିଥିଲେ । ଏହାପରେ ଶୈବ ଓ ବୈଷ୍ଣବମାନେ ମଧ୍ୟ ଆପଣାର ସ୍ଥିତିରକ୍ଷା ପାଇଁ ନିଜନିଜ ଭିତରେ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ ।

ମଧ୍ୟଯୁଗରେ ହିନ୍ଦୁ, ପଠାଣ ଓ ମୋଗଲମାନେ ନିଜର ରାଜନୀତିକ ପ୍ରତିପତ୍ତି ଜାହିର କରିବା ପାଇଁ ଅନେକ ରକ୍ତକ୍ଷୟୀ ସଂଗ୍ରାମରେ ଲିପ୍ତ ହୋଇଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ମରହଟ୍ଟା ଓ ଇଂରେଜମାନେ ମଧ୍ୟ ସେହି ଗୋଟିଏ ଲକ୍ଷ୍ୟ ଓ ଉଦ୍ଦେଶ୍ୟରେ ଲଢ଼ିଥିଲେ । ପ୍ରାଚ୍ୟ ଭୂଖଣ୍ଡରେ ବ୍ୟବସାୟ-ବାଣିଜ୍ୟ କ୍ଷେତ୍ରରେ ନିଜନିଜର ଏକାଧିପତ୍ୟ କ୍ଷମତା ବିସ୍ତାର ପାଇଁ ଏଠାରେ ୟୁରୋପର ପ୍ରଧାନ ପ୍ରଧାନ ସାଗରିକ ଶକ୍ତିମାନେ ଯଥା-ପର୍ତ୍ତୁଗିଜ, ଦିନାମାର, ଓଲନ୍ଦାଜ, ଫରାସୀ ଓ ଇଂରେଜ ଲଢ଼େଇ କରିଥିଲେ ।

ଏହି କ୍ଷୁଦ୍ର ପୁସ୍ତକଟି ପୂର୍ବୋକ୍ତ ପ୍ରଧାନ ପ୍ରଧାନ ଘଟଣାବଳୀକୁ ଉପଜୀବ୍ୟ କରି ସଂକ୍ଷିପ୍ତରେ ପଦ୍ୟାକାରରେ ଲେଖାହେବା ସଂଗେସଂଗେ ଏଥିରେ ଏସବୁର ବିସ୍ତୃତ ନୋଟ ମଧ୍ୟ ଦିଆଯାଇଛି ।

ସାର ଚର୍ଲସ୍ ଇଲିଅଟଙ୍କ ସମୟରେ ହଣ୍ଟରଙ୍କ କୃତ 'ଇମ୍ପେରିଆଲ ଗେଜେଟିଅର'ର ସଂଶୋଧିତ ସଂସ୍କରଣ ପ୍ରକାଶ ପାଇଁ ଉଦ୍ୟମ ହେବାରୁ ଏହି ପୁସ୍ତକର ଲେଖକ, ଯିଏକି ସଦର ଲୋକାଲବୋର୍ଡର ଉପାଧ୍ୟକ୍ଷ ଥିଲେ, ତାଙ୍କୁ ତତ୍କାଳୀନ ଜିଲ୍ଲାପାଳ ତଥା ଜିଲ୍ଲାବୋର୍ଡର ଅଧ୍ୟକ୍ଷ ମି.କରନିସ୍ ଜିଲ୍ଲାର ସମସ୍ତ ଅଞ୍ଚଳ ବୁଲି ଏଥିପାଇଁ ତଥ୍ୟ ସଂଗ୍ରହ କରିବାକୁ ଦାୟିତ୍ୱ ଦେଇଥିଲେ । ଏହା ଫଳରେ ଏହି ଲେଖକ ଐତିହାସିକ ଗୁରୁତ୍ୱଥିବା ଏହି ଜିଲ୍ଲାର ବିଭିନ୍ନ ସ୍ଥାନ ଭ୍ରମଣ କରି ତଥ୍ୟ ସଂଗ୍ରହ କରିବାର ସୁଯୋଗ ପାଇପାରିଥିଲା । ପ୍ରାୟ କୋଡ଼ିଏ ବର୍ଷ ପୂର୍ବରୁ ଏହି ଲେଖକ ସେହିସବୁ ସ୍ଥାନ ପରିଦର୍ଶନ କଲାବେଳେ ଯାହା ଯେମିତି ଥିଲା, ତାହାର ଅବିକଳ ବର୍ଣ୍ଣନା ଲିପିବଦ୍ଧ କରିଛି ଏ ପୁସ୍ତକରେ ।

ପରିଶେଷରେ, ଯଦି ଏହି ଛୋଟ ବହିଟି ନିଜ ଦେଶର ଇତିହାସ ଜାଣିବାକୁ ଏକାନ୍ତ ଉଦାସୀନ ଥିବା ଓଡ଼ିଶାର ପାଠକମାନଙ୍କ ମନରେ ସାମାନ୍ୟତମ ଆଗ୍ରହ ସୃଷ୍ଟିକରେ, ତାହେଲେ ଏହି ଲେଖକ ନିଜକୁ ଭାଗ୍ୟବାନ୍ ମନେ କରିବ ।"

ଲେଖକ

ବାଲେଶ୍ୱର, ୨୫ ସେପ୍ଟେମ୍ବର, ୧୯୦୯

ଉଲ୍ଲିଖିତ ଭୂମିକାରୁ ଲେଖକଙ୍କ ସଂପର୍କରେ ଏବଂ ଉକ୍ତ 'ବାଲେଶ୍ୱର' ନାମକ ପୁସ୍ତକଟିର ରଚନା ମୂଳରେ ଥିବା ଉଦ୍ଦେଶ୍ୟ ସଂପର୍କରେ କିଞ୍ଚିତ୍ ସୂଚନା ମିଳେ । ଲେଖକ ହରିଶ୍ଚନ୍ଦ୍ର ସରକାର ଏ ବହିଟି ପ୍ରକାଶର କୋଡ଼ିଏ ବର୍ଷ ପୂର୍ବରୁ ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ବିଭିନ୍ନ ଅଞ୍ଚଳ ବୁଲି ଇମ୍ପିରିଆଲ ଗେଜେଟିଅର ପାଇଁ ତଥ୍ୟ ସଂଗ୍ରହ କରିଥିବାର ସୂଚନା ଦେଇଛନ୍ତି ଏବଂ ସେହି ସବୁ ସଂଗୃହୀତ ତଥ୍ୟକୁ ଭିତ୍ତିକରି ପଦ୍ୟାକାରରେ 'ବାଲେଶ୍ୱର'ର ଇତିହାସ ଲିପିବଦ୍ଧ କରିଛନ୍ତି । ଇତିମଧ୍ୟରେ ଶହେବର୍ଷରୁ ଉର୍ଦ୍ଧ୍ୱଗତ ହୋଇଗଲାଣି । ସମୟର ଗତିରେ ଅନେକ କିଛିର ପରିବର୍ତ୍ତନ ହେଲାଣି । ବହୁ ପ୍ରାଚୀନ କୀର୍ତ୍ତି ନଷ୍ଟ-ବିନଷ୍ଟ ହୋଇଗଲାଣି । ସେତେବେଳେ ଅବିଭକ୍ତ ବାଲେଶ୍ୱର ଜିଲ୍ଲା ସଂପର୍କରେ ସେ ଯେଉଁ ତଥ୍ୟ ସବୁ ସଂଗ୍ରହ କରିଥିଲେ ଐତିହାସିକ ଦୃଷ୍ଟିକୋଣରୁ ଆଜିବି ସେସବୁର ଉପଯୋଗିତା ଓ ପ୍ରାସଙ୍ଗିକତା ରହିଛି । ଏହି ତଥ୍ୟସବୁକୁ ଅନେକାଂଶରେ ସମ୍ବଳ କରି ପରବର୍ତ୍ତୀ ପର୍ଯ୍ୟାୟରେ ଅନେକେ, ବିଶେଷକରି ୰ଗୋଲକ ଚନ୍ଦ୍ର ମହାପାତ୍ର 'ଯୁଗେଯୁଗେ ବାଲେଶ୍ୱର' ପୁସ୍ତକ ରଚନା କରିଛନ୍ତି । ଏହି ଦୃଷ୍ଟିରୁ ଦେଖିଲେ ସରକାର ମହାଶୟଙ୍କ 'ବାଲେଶ୍ୱର' ପୁସ୍ତକ ରଚନା ଓଡ଼ିଆରେ ପ୍ରଥମ ଫଳପ୍ରଦ ଉଦ୍ୟମ ।

ସ୍ୱର୍ଗତ ହରିଶ୍ଚନ୍ଦ୍ର ସରକାରଙ୍କ ସଂପର୍କରେ ମୁଁ ବହୁ ଅନୁସଂଧାନ କରି ଯେତିକି ଜାଣିବାକୁ ପାଇଛି, ସେଥିରୁ ଜଣାଯାଏ ଯେ ସେ ବାଲେଶ୍ୱର ସହର ଅନ୍ତର୍ଗତ ସୁଏଲପୁର ଗ୍ରାମରେ ଆନୁମାନିକ ୧୮୫୧/୫୨ ମସିହାରେ ଜନ୍ମଗ୍ରହଣ କରିଥିଲେ ଏବଂ ବାଲେଶ୍ୱର ଜିଲ୍ଲାସ୍କୁଲରୁ ୧୮୬୮ ମସିହାରେ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ ପାଶ୍ କରିଥିଲେ । ସେବର୍ଷ ଜିଲ୍ଲାସ୍କୁଲରୁ ମାତ୍ର ତିନିଜଣ ଛାତ୍ର କୃତକାର୍ଯ୍ୟ ହୋଇଥିଲେ । (ଯଥା-(୧) ଖାଁ ଅବ୍ଦୁଲ ରହମାନ, (୨) ହରିଶ୍ଚନ୍ଦ୍ର ସରକାର (ଉଭୟ ୨ୟ ଶ୍ରେଣୀ) ଏବଂ ଦୁର୍ଗାଚରଣ ଦାସ (୩ୟ ଶ୍ରେଣୀ) । ସ୍ୱର୍ଗତ ସରକାର ବାଲେଶ୍ୱର ଲୋକାଲ ବୋର୍ଡର କିଛିଦିନ ଧରି ଭାଇସ୍ ଚେୟାରମ୍ୟାନ ବା ଉପାଧ୍ୟକ୍ଷ ଥିଲେ ଏବଂ ପରେ ୧୯୦୯ ମସିହା ବେଳକୁ ବଳଙ୍ଗନଦୀର ପରମିଟ ଘାଟ ନିକଟସ୍ଥ 'ସାମନ୍ତ ପ୍ରେସ'ର ମେନେଜର ବା ପରିଚାଳକ ରୂପେ କାର୍ଯ୍ୟ କରୁଥିଲେ । ଏହି ପ୍ରେସର ସ୍ୱତ୍ୱାଧିକାରୀ ଥିଲେ ସୁନହଟ ଗ୍ରାମନିବାସୀ ବାଲେଶ୍ୱର ଜିଲ୍ଲାର

ସବୁଠୁଁ ବଡ଼ ଜମିଦାର ସାମନ୍ତ ରାଧାଚରଣ ଦାସ (ଫକବାବୁ) । ଏହି ରାଧାଚରଣ ଦାସ ଥିଲେ 'ବାଲେଶ୍ୱର' ସମେତ ସ୍ୱର୍ଗତ ସରକାରଙ୍କ ପ୍ରଣୀତ ଶିବାଜୀ, ଅଙ୍କସୂତ୍ର, ଭାରତବର୍ଷର ଇତିହାସ ସାର ସଂଗ୍ରହ ଇତ୍ୟାଦି ଅଧିକାଂଶ ପୁସ୍ତକର ପ୍ରକାଶକ । ସରକାର ମହୋଦୟ ଓଡ଼ିଆ ପାଠ୍ୟପୁସ୍ତକ ମଧ୍ୟ ରଚନା କରିଥିଲେ । ଫକୀରମୋହନଙ୍କ ପ୍ରତିଷ୍ଠିତ 'ସମ୍ବାଦବାହିକା' ବନ୍ଦହୋଇଯିବା ପରେ ଯେତେବେଳେ କିଛିବର୍ଷ ପରେ ପୁଣି 'ସାମନ୍ତ ପ୍ରେସ'ରୁ ପ୍ରକାଶ ପାଇଲା, ସେତେବେଳେ ଏହି ନବପର୍ଯ୍ୟାୟର 'ସମ୍ବାଦ ବାହିକା'ର ପ୍ରକାଶନ ଓ ସଂପାଦନା ସହିତ ହରିଶ୍ଚନ୍ଦ୍ର ସରକାର ମଧ୍ୟ ଜଡ଼ିତ ଥିଲେ । ବାଲେଶ୍ୱରର ସାମାଜିକ, ସାଂସ୍କୃତିକ ଓ ସାହିତ୍ୟିକ କାର୍ଯ୍ୟକଳାପ ସହିତ ସେ ବେଶ୍ କିଛିକାଳ ଧରି ଜଡ଼ିତ ଥିବାର ସୂଚନା ମିଳେ, କିନ୍ତୁ ଏହି ବିସ୍ମୃତ ପ୍ରତିଭା ସଂପର୍କରେ ଆଜିର ଅଧିକାଂଶ ନାଗରିକ ଏକାନ୍ତ ଅଜ୍ଞ । କେବେ ତାଙ୍କର ଦେହାନ୍ତ ହେଲା, ସେ ସଂପର୍କରେ ବା ତାଙ୍କର ଅନ୍ୟାନ୍ୟ ବିସ୍ମୃତ କାର୍ଯ୍ୟାବଳୀ ସଂପର୍କରେ ମୁଁ ବହୁଚେଷ୍ଟା କରି ମଧ୍ୟ ବିଶେଷ ତଥ୍ୟ ସଂଗ୍ରହ କରିପାରିନାହିଁ । ଏବେ ତାଙ୍କ ବଂଶର କେତେକ ସଂପର୍କୀୟ ବା କୁଟୁମ୍ବ ବାଲେଶ୍ୱର ସହରର ସୁଏଲପୁର ଗ୍ରାମରେ ଲକ୍ଷ୍ମୀ-ନାରାୟଣ ମନ୍ଦିର ସମ୍ମୁଖରେ ବାସ କରୁଛନ୍ତି । ସେମାନେ ମଧ୍ୟ ନିଜ ବଂଶର ଏହି ପୂର୍ବପୁରୁଷଙ୍କ ସଂପର୍କରେ ବିଶେଷ କିଛି ଜାଣିନାହାନ୍ତି ବୋଲି ପ୍ରକାଶ କରିଛନ୍ତି ।

ଯାହାହେଉ ସ୍ୱର୍ଗତ ସରକାର ତାଙ୍କର ଅଭିଜ୍ଞତା ଓ ଭ୍ରମଣଲବ୍ଧ ଜ୍ଞାନକୁ ଆଧାର କରି ୧୯୦୯ ମସିହାରେ ଯେଉଁ 'ବାଲେଶ୍ୱର' ନାମକ ଦୁର୍ଲଭ ପୁସ୍ତକ ରଚନା କରିଥିଲେ ତାହା ତାଙ୍କ ଅନୁସନ୍ଧିତ୍ସା, ଇତିହାସପ୍ରିୟତା ଓ ଜାତିପ୍ରାଣତାର ସମ୍ୟକ ସୂଚନା ଦିଏ । ୧୪ ଅକ୍ଷରୀ ଛାନ୍ଦରେ ଲିଖିତ ଏହି ଐତିହାସିକ ପୁସ୍ତକର ଆରମ୍ଭ ଏହିପରି-

"ଉତ୍ତରେ ମେଦିନୀପୁର, ପଶ୍ଚିମେ ଭୂଧର,
ଦକ୍ଷିଣେ କଟକ, ପୂର୍ବେ ଅସୀମ ସାଗର,
ମଧ୍ୟେ ଜଗନ୍ନାଥ ଦାଣ୍ଡ, କଟିର ମେଖଳା,
ଇଷ୍ଟକ, କଙ୍କର, ଗେରୁ-ମାଟି ଅଙ୍ଗେ ବୋଳା ।
ସ୍ଥାନେ ସ୍ଥାନେ ସେତୁମାନ ମେଖଳା ଯୋଜକ,
ଦୀର୍ଘାକାର, ଭୀମକାୟ ଉପୁଜେ ଚମକ ।"

ଏଥିରେ ଯେଉଁ ଜଗନ୍ନାଥ ଦାଣ୍ଡ ବା ସଡ଼କ କଥା ବର୍ଣ୍ଣନା କରାଯାଇଛି, ଆଜି ସେହି ଦାଣ୍ଡ ପ୍ରାୟ ନିଶ୍ଚିହ୍ନ । ଜାତୀୟ ରାଜପଥ (National Highway) ନିର୍ମିତ ହେବା ପରେ ଏହା

ତା ମଧ୍ୟରେ ବିଲୀନ ହୋଇଯାଇଛି କିମ୍ବା କେଉଁଠି କେଉଁଠି ନିଜର ଜରାଜୀର୍ଣ୍ଣ ଅସ୍ତିତ୍ୱ କିଛି ପରିମାଣରେ ବଜାୟ ରଖିଛି । ଏହି ସଡ଼କକୁ 'ଗ୍ରେଣ୍ଡ ଟ୍ରଙ୍କ ରୋଡ଼' (Grand Trunk Road) ବୋଲି ମଧ୍ୟ କୁହାଯାଉଥିଲା । କିନ୍ତୁ ଏକଦା ଏହା ଥିଲା ଉପକୂଳ ଓଡ଼ିଶାର ମୁଖ୍ୟ ଗମନାଗମନ ପଥ । ୮ସରକାରଙ୍କ ବର୍ଣ୍ଣନାନୁସାରେ-

"ଜଗନ୍ନାଥ ଦାଣ୍ଡ ଦୃଶ୍ୟ ଅତି ମନୋହର
ଅଛିକି ନଅଛି ବିଶ୍ୱେ କୀରତି ସୁନ୍ଦର ।
ମାର୍ଗ ଦୁଇପାର୍ଶ୍ୱେ ରାଜେ ମହୀରୁହଚୟ,
ଆତପ ତାପିତ ଯାତ୍ରୀମାନଙ୍କ ଆଶ୍ରୟ ।
ବହୁଦୂର ଦେଶାନ୍ତରୁ ବିହଗ ନିକରେ
ନିର୍ଭୟେ ଯାପନ୍ତି ନିଶି ତାହାର ଉପରେ ।
ସହସ୍ର ସହସ୍ର ଯାତ୍ରୀ କରନ୍ତି ଗମନ
ଅଭିଳାଷ ଜଗନ୍ନାଥ ଦେବ ଦରଶନ ।
ପଥିକ ସୁବିଧା ପାଇଁ 'ଚଟୀ' ସ୍ଥାନେସ୍ଥାନେ
ପରିପୂର୍ଣ୍ଣ ନାନା ପଣ୍ୟେ ବିହିତ ବିଧାନେ ।
ବିରାଜିତ ଧର୍ମଶାଳା, ଯାତ୍ରୀଙ୍କ ଆଳୟ
ଦୁଇପାର୍ଶ୍ୱେ ହର୍ମ୍ୟରାଜି, ମଧ୍ୟେ ଜଳାଶୟ
ବିରଚିଲେ ମାତାଦେଶେ ରାଜା ସୁଖମୟ
ରଖିଲେ ଭାରତ ମଧ୍ୟେ ସୁନାମ ଅକ୍ଷୟ ।"

ଜଗନ୍ନାଥ ସଡ଼କ (ଦାଣ୍ଡ) ଓ ରାଜା ସୁଖମୟଙ୍କ ସଂପର୍କରେ ବିସ୍ତୃତ ବିବରଣୀ ଦେବାକୁ ଯାଇ ସେ ପରିଶିଷ୍ଟରେ ଲେଖିଛନ୍ତି- "ଜଗନ୍ନାଥ ସଡ଼କ ଉଲୁବେଡ଼ିଆଠାରୁ ପୁରୀ ପର୍ଯ୍ୟନ୍ତ ବିସ୍ତୃତ । ଏହି ସଡ଼କରେ ଯେତେ ପୋଲ ଅଛି, ତନ୍ମଧ୍ୟରେ 'ନୁଣିଆଯୋରି' ପୋଲ ସର୍ବାପେକ୍ଷା ଉଚ୍ଚ ଓ ଦୀର୍ଘ । ଏହା ବାଲେଶ୍ୱର ସହରର ଠିକ୍ ଉତ୍ତରରେ ଅବସ୍ଥିତ ।" "ଜଗନ୍ନାଥ ସଡ଼କର ପ୍ରତ୍ୟେକ ୪/୫ କ୍ରୋଶ ଅନ୍ତରେ ପଥିକମାନଙ୍କର ଅବସ୍ଥାନ ଉପଯୋଗୀ ନାନା ପଣ୍ୟପୂର୍ଣ୍ଣ ଚଟୀ ଥିଲା । ବର୍ତ୍ତମାନ ରେଲ ହେତୁ ଅଧିକାଂଶ ଲୋପ ହୋଇଅଛି ।" "ଜଗନ୍ନାଥ ସଡ଼କ ନିର୍ମାତା କଲିକତା ନିବାସୀ ରାଜା ସୁଖମୟ ବାହାଦୁରଙ୍କ ମାତା ଜଗନ୍ନାଥ ଦର୍ଶନ ସକାଶ ଆସି ଯାତ୍ରୀମାନଙ୍କ କଷ୍ଟ ଦେଖି ପୁତ୍ରଙ୍କୁ ଏହି ସଡ଼କ

ନିର୍ମାଣ ସକାଶ ଅନୁରୋଧ କରିବାରୁ ପୁତ୍ର ଦେଢ଼ଲକ୍ଷ ଟଙ୍କା ବ୍ୟୟ କରି ଏହି ରାସ୍ତା କରାଇଥିଲେ । xxx ତାତ୍କାଳିକ ଗଭର୍ଣ୍ଣର ଲର୍ଡ ଆମହର୍ଷ୍ଟଙ୍କ ଅନୁମତି ଅନୁସାରେ ଏହି ରାସ୍ତା ନର୍ମିତ ହୋଇଥିଲା । ୧୮୬୭-୭୮ରେ ସଡ଼କ ପକ୍କାହୋଇଅଛି ।"

୧୯୦୯ ମସିହା ବେଳକୁ ଓଡ଼ିଶାରେ ରେଳପଥ ନୂଆନୂଆ ହୋଇଥାଏ । ସେ ସଂପର୍କରେ ଏହି 'ବାଲେଶ୍ୱର' ବହିରେ ଲେଖାଅଛି-

"କିପାଇଁ ଚାଲିବ ଯାତ୍ରୀ ଜଗନ୍ନାଥ ଦାଣ୍ଡେ
ଆରାମରେ ବସି ଯାଉଛନ୍ତି କେତେ ଘଣ୍ଟେ ।
ନାହିଁ ବାଟଚଲା ଥକା, ନିର୍ଭୟ ଅନ୍ତରେ
ମାସକର ବାଟ ଚାଲିଯାଏ ଦିନକରେ ।"

ବାଲେଶ୍ୱର ସହରର ସଂପର୍କରେ ଏଥିରେ ଉଲ୍ଲେଖ ଅଛି-

"ବଳଙ୍ଗ ପୂଲିନେ ରାଜେ ନଗ୍ର ବାଲେଶ୍ୱର
ବିରାଜିତ କାଳେ ଯହିଁ ବାଣିଜ୍ୟ ବିସ୍ତର;
ବାଣ ତପେ ତୁଷ୍ଟ ସିନ୍ଧୁ କଲେକ ଅର୍ପଣ
ସୁବିଶାଳ ଭୂମିଖଣ୍ଡ ନିବାସ କାରଣ;
ତହିଁପରେ ବାଣରାଜା ସ୍ଥାପିଲେ ନଗର
କ୍ଷୁଦ୍ର କଳେବର ମାତ୍ର ଦୃଶ୍ୟ ମନୋହର;
ବାଲିପରେ ଅବସ୍ଥିତ ତେଣୁ 'ବାଲେଶ୍ୱର'
ଅଥବା ସ୍ଥାପକ ନାମୁ ଉତ୍ପତ୍ତି ନାମର ।"

ବାଲେଶ୍ୱର ସହରର ବହୁ ପୁରାତନ ଓ ଐତିହ୍ୟସଂପନ୍ନ ଗ୍ରାମ 'ସୁନହଟ' ସଂପର୍କରେ ଏହି ପୁସ୍ତକରୁ ଅନେକ ତଥ୍ୟ ମିଳେ । କିମ୍ବଦନ୍ତୀ କହେ- ଅତି ପ୍ରାଚୀନ କାଳରେ ବାଣରାଜା ସମୁଦ୍ରଙ୍କୁ ତପରେ ତୁଷ୍ଟକରି ତାଙ୍କ ଠାରୁ କିଛି ସ୍ଥାନ ନେଇ ବାଲେଶ୍ୱର ସହର ସ୍ଥାପନ କରିଥିଲେ । ଏହି ବାଣ ହେଉଛନ୍ତି ପୁରାଣବର୍ଣ୍ଣିତ ମହାଦାନୀ ବଳିଙ୍କ ଜ୍ୟେଷ୍ଠପୁତ୍ର । ବଳି ଭଗବାନ ଶ୍ରୀକୃଷ୍ଣଙ୍କୁ ଦାନ ଦେବାପରେ ପୃଥିବୀସ୍ଥ ଭୂମିରୁ ବଞ୍ଚିତ ହେବାରୁ ତାଙ୍କ ପୁତ୍ର ବାଣ ଅନ୍ୟ ଉପାୟ ନପାଇ ସମୁଦ୍ରଠାରୁ ଭୂମିଭିକ୍ଷା କରିବାକୁ ବାଧ ହୋଇଥିଲେ । ଏବଂ ସାଗର ପ୍ରଦତ୍ତ ଭୂମିରେ ଯେଉଁ ନଗର ପ୍ରତିଷ୍ଠା କରିଥିଲେ ତାର ନାମ 'ବାଲେଶ୍ୱର' । ଏହା 'ବାଣେଶ୍ୱର' ନାମର ଅପଭ୍ରଂଶ । ଏହି ବାଣରାଜାଙ୍କ କନ୍ୟା 'ଉଷା'ଙ୍କ ନାମରୁ

ତାଙ୍କ ଗଡ଼ର ନାମ 'ଉଷାମେଢ଼' ହୋଇଥିଲା । ଉଷାଙ୍କୁ ହରଣ କରିବା ପାଇଁ ଶ୍ରୀକୃଷ୍ଣଙ୍କ ପୁତ୍ର ଅନିରୁଦ୍ଧ ଏହି ଗଡ଼ ଆକ୍ରମଣ କରିଥିଲେ । ଗଡ଼ (ଉଷାମେଢ଼)ର ଦକ୍ଷିଣପାର୍ଶ୍ୱରେ ଯୁଦ୍ଧ ହୋଇ ଅନେକ ରକ୍ତପାତ ହୋଇଥିଲା । ସେହି ଯୁଦ୍ଧସ୍ଥଳର ନାମ- ସୁନହଟ । ପୁରାଣ ଇତ୍ୟାଦିରେ ଏହା 'ଶୋଣିତପୁର' ବୋଲି ଅଭିହିତ । 'ଶୋଣିତ' ଶବ୍ଦରୁ 'ସୁନ' ଓ 'ଟହଟହ'ରୁ 'ହଟ' ଆସି 'ସୁନହଟ' ହୋଇପାରେ ବୋଲି ଅନୁମାନ କରାଯାଏ । ଏହାଛଡ଼ା ଏହି ସହର, ସମୁଦ୍ରକୂଳସ୍ଥ ବାଲୁକା ଉପରେ ସ୍ଥାପିତ ହୋଇଥିବାରୁ ଏହାର ନାମ 'ବାଲେଶ୍ୱର' ହୋଇଥାଇପାରେ ବୋଲି ଉକ୍ତ ପୁସ୍ତକରେ ଉଲ୍ଲେଖ ଅଛି ।

ଲେଖକ ହରିଶ୍ଚନ୍ଦ୍ର ତାଙ୍କ ନିଜ ନିବାସସ୍ଥଳ ସୁଏଲପୁର ବା ସୋହେଲପୁରରେ ଅଦ୍ୟାବଧି ବିରାଜିତ ଲକ୍ଷ୍ମୀନାରାୟଣ ମନ୍ଦିର ସଂପର୍କରେ ଲେଖିଛନ୍ତି-

"ବିରାଜେ ସୋହେଲପୁରେ କୀରତି ପ୍ରାଚୀନ
ମହାରାଷ୍ଟ୍ର ଅଧିକାର ଚିହ୍ନ ସମୀଚୀନ,
ମୋତିରାମ ଗଢ଼ିଥିଲେ ବିଶାଳ ମନ୍ଦିର
ଧବଳ ଭୂଧର ସମ ଉନ୍ନତ ଶରୀର,
ଦେଉଳେ ବିରାଜେ ମୂର୍ତ୍ତି ଲକ୍ଷ୍ମୀନାରାୟଣ
ଭକ୍ତିଭାବେ ଭକ୍ତଗଣ କରନ୍ତି ଦର୍ଶନ ।
ସ୍ଥାପିଲେ ନଗର ମଧ୍ୟେ ବଜାର ପ୍ରଧାନ
ବିବିଧ ବିପଣି ଶୋଭା 'ମୋତିଗଞ୍ଜ' ନାମ ।"

ଲାଲା ମୋତିରାମ ରାୟ ଦାଦୁ ନାମକ ଜଣେ ମରହଟ୍ଟା କର୍ମଚାରୀ ସୁଏଲପୁରରେ ଲକ୍ଷ୍ମୀନାରାୟଣ ମନ୍ଦିର ନିର୍ମାଣ କରିଥିଲେ ଏବଂ ମୋତିଗଞ୍ଜ ବଜାର ପ୍ରତିଷ୍ଠା କରି ତାହାର ଆୟରେ ଉକ୍ତ ମନ୍ଦିର ପରିଚାଳନାର ବ୍ୟବସ୍ଥା କରିଥିଲେ । ପରେ ଏହି ମନ୍ଦିର ମୟୂରଭଞ୍ଜ ମହାରାଜାଙ୍କ ଅଧୀନକୁ ଚାଲିଯାଇଥିଲା ।

ସେହିଭଳି ଦାମୋଦରପୁରରେ ଥିବା ବହୁ ପୁରାତନ ପ୍ରସିଦ୍ଧ ଶ୍ୟାମସୁନ୍ଦର ମନ୍ଦିର ସଂପର୍କରେ ୰ସରକାରଙ୍କ 'ବାଲେଶ୍ୱର' ପୁସ୍ତକରୁ ଜଣାଯାଏ ଯେ ଭୟାନିଧି ରାମ ଆଢ଼୍ୟ ନାମକ ଜଣେ ବଂଗୀୟ ସୁବର୍ଣ୍ଣ ବଣିକ (ମରହଟ୍ଟାମାନଙ୍କର ଜଣେ କର୍ମଚାରୀ) ଏହାକୁ ପ୍ରତିଷ୍ଠା କରିଥିଲେ । ଏହାର ଶ୍ରୀମନ୍ଦିର ଓ ନାଟମନ୍ଦିର ଯଥାକ୍ରମେ ୰ମଧୁସୂଦନ କର ଓ ୰ପଦ୍ମଲୋଚନ ମଣ୍ଡଳ ନିର୍ମାଣ କରିଥିଲେ । ବିଖ୍ୟାତ ଯବନ କବି ' ସାଲବେଗ' ଏହି ମନ୍ଦିରସ୍ଥ ଜୀଉଙ୍କୁ ଦର୍ଶନ କରିବାକୁ ଆସିଥିଲାବେଳେ ତାଙ୍କ ଦର୍ଶନ ପାଇଁ ମନ୍ଦିରରେ

ଗୋଟିଏ ଝରକା ବା ଗବାକ୍ଷ କରାଯାଇଥିଲା । ଏହି ମନ୍ଦିରର ପଶ୍ଚିମ ପାଖରେ ଏହି ଝରକା ଏବେ ବି ରହିଛି ।

"ଶ୍ୟାମଭକ୍ତ 'ସାଲବେଗ' ଦର୍ଶନ କାରଣ
ଶ୍ରୀମନ୍ଦିର ଅଙ୍ଗେ ହେଲା ଗବାକ୍ଷ ରଚନ ।
ଯବନ ଔରସେ ଜାତ, ସେହେତୁ ତାହାର
ମନ୍ଦିର ପ୍ରବେଶେ ନାହିଁ ଥିଲା ଅଧିକାର ।
ତେଣୁ ଭକ୍ତଜନ ନିତି ଦର୍ଶନ କାରଣ
ଦେବ ସ୍ୱପ୍ନାଦେଶ ମତେ ଉପାୟ ସୃଜନ ।"

ବାଲେଶ୍ୱର ସହରର ମଧ୍ୟସ୍ଥଳ ସିନେମାଛକ ନିକଟରେ ଆଜି ଏକାନ୍ତ ଅବହେଳିତ ଅବସ୍ଥାରେ ଯେଉଁ ବିରାଟ ବାଗବୃନ୍ଦାବନ ପୋଖରି ରହିଛି ତାହା ସଂପର୍କରେ ଯେଉଁ ତଥ୍ୟ ତାହା ଏହିପରି-

"ବୃନ୍ଦାବନ ନାମେ ଏକ ସନ୍ନ୍ୟାସୀ ପ୍ରବର
ଉପାର୍ଜି ପ୍ରାର୍ଥନା ବଳେ ଭୂଖଣ୍ଡ ପ୍ରସର,
ଖୋଳିଲେ ତଡ଼ାଗ ତହିଁ ରୋପିଲେ ଉଦ୍ୟାନ,
ଆଜିଯାଏଁ ବାଲେଶ୍ୱର ବକ୍ଷେ ବିଦ୍ୟମାନ ।
ଯବନ ନୃପତିଠାରୁ ପ୍ରାପତି କାରଣ
'ହରନବାବୀ ପାଟଣା ବାଗବୃନ୍ଦାବନ' ॥"

ଆଜିବି ସରକାରୀ କାଗଜପତ୍ରରେ ଉକ୍ତ ପୁଷ୍କରିଣୀ ଅଞ୍ଚଳର ନାମ 'ହରନବାବୀ ପାଟଣା ବାଗ ବୃନ୍ଦାବନ' ଲେଖାଯାଉଛି ।

ଇଂରେଜମାନଙ୍କ ପ୍ରଥମ କଚେରୀଘର ଏହି ବାଗବୃନ୍ଦାବନ ପୁଷ୍କରିଣୀ ନିକଟବର୍ତ୍ତୀ ଏକ ପଡ଼ିଆରେ ଥିଲା, କିନ୍ତୁ- "ବଜ୍ରପାତେ ପୋଡ଼ିଗଲା ବିଚାର ଆଳୟ / ପୋଡ଼ାବଙ୍ଗଳା ନାମରେ ସ୍ଥାନ ପରିଚୟ" ବୋଲି ଏହି ପୁସ୍ତକରୁ ସୂଚନା ମିଳେ ।

ଏହାପରେ କଚେରୀ ଉଠିଗଲା 'ଗୀର୍ଜା'ର ପଶ୍ଚିମକୁ ଏବଂ ଆଜି ପର୍ଯ୍ୟନ୍ତ ସେହିଠାରେ ଚାଲିଛି । ସେତେବେଳର କଚେରୀର କାର୍ଯ୍ୟଧାରା ସଂପର୍କରେ ଏହି ପୁସ୍ତକରେ ଯେଉଁ ବିବରଣୀ ଦିଆଯାଇଛି ସେଥିରୁ ଜଣାପଡ଼େ ଆଜିଭଳି ସେତେବେଳେ ମଧ୍ୟ ଦୁର୍ନୀତି ଭରି ରହିଥିଲା । ହରିଶ୍ଚନ୍ଦ୍ର ସରକାର 'ବାଲେଶ୍ୱର' ବହିରେ ଲେଖିଛନ୍ତି-

"କେରାଣି, ମୋହରିଗଣ ହୋଇ ଶ୍ରେଣୀବଦ୍ଧ
ହାକିମ ହୁକୁମ କରୁଛନ୍ତି ଲିପିବଦ୍ଧ,
ପ୍ରସାରି ଦକ୍ଷିଣେତର କର* କେହୁ ଜଣ
କରୁଛନ୍ତି ଅନ୍ୟଠାରୁ ଧନ ଆକିଞ୍ଚନ,
ଆଶାନୁରୂପ ଧନ ନପାଇଁ ସତ୍ୱରେ
କରନ୍ତି ଟାଳମଟାଳ ପ୍ରାର୍ଥୀଙ୍କ କାର୍ଯ୍ୟରେ,
ଥାଉ ବା ନଥାଉ କାର୍ଯ୍ୟ ସମସ୍ତେ ଚଞ୍ଚଳ,
ସ୍ଥିର ହୋଇ ବସିବାର ନୁହଁଇ ଏ ସ୍ଥଳ ।"

ଋଦ୍ଧିପୁର ସମୁଦ୍ରକୂଳରେ ବଳଙ୍ଗନଦୀ ମୁହାଣରେ ଯେଉଁ ସ୍ଥାନ ଆଜି 'ବଳରାମଗଡ଼ି' ନାମରେ ଖ୍ୟାତ, ସେଠାରେ ଏକଦା ବଳରାମ ଭୂୟାଁ ନାମକ ଜଣେ ସମୃଦ୍ଧିଶାଳୀ ଜମିଦାରଙ୍କ ଗଡ଼ ଥିଲା ଏବଂ ତାଙ୍କରି ନାମାନୁସାରେ ଏହି ସ୍ଥାନର ନାମକରଣ ହୋଇଛି । ବିବରଣୀ ଅନୁସାରେ-

"ବଳଙ୍ଗ ଅପର ତଟ ସମୁଦ୍ରକୂଳରେ
ରାଜେ ବଳରାମଗଡ଼ ଆବୃତ ବନରେ;
ବଳରାମ ଭୂୟାଁଙ୍କର ଆବାସ ସୁନ୍ଦର
ଶୋଭୁଥିଲା କାଳେ, ଏହି ଅରଣ୍ୟ ଭିତର;
ଛୟାଳିଶ 'ଛୟଲାବି' ସମ ମହାକାଳ
ନାଶିଲା ସମୁଦ୍ରକୂଳ କବଳେ କରାଳ;
ଉତ୍ତାଳ ତରଙ୍ଗଚୟ ପବନ ସହାୟ
ବିନାଶିଲା ଜନପଦ ଦୁର୍ଗ ମହାକାୟ;
ଅରଣ୍ୟରେ ଆବରିଲା ଘନ ଜନପଦ
ଶାର୍ଦ୍ଦୁଳ, ଭଲ୍ଲୁକ, ସର୍ପ, କୁରଙ୍ଗ ଆସ୍ପଦ;
ପୂରବ ସଂପଦ ଚିହ୍ନ ହେଲା ଅନ୍ତର୍ଧ୍ୟାନ
ଅଛି ମାତ୍ର ସ୍ଥାନେ ସ୍ଥାନେ ଦାଣ୍ଡ ଚିହ୍ନମାନ ।"

---

* - *ଦକ୍ଷିଣେତର କର- ବାମହସ୍ତ*

୧୨୪୬ ସାଲର "ଛୟଲାବି" ବା ସାମୁଦ୍ରିକ ଜଳୋଚ୍ଛ୍ୱାସ, ଯାହା ଆଜି 'ସୁନାମି' ନାମରେ ଖ୍ୟାତ ହେଲାଣି ତହିଁରେ ଏହି ବଳରାମଗଡ଼ିର ଘନ ଜନପଦ ଧ୍ୱଂସପ୍ରାପ୍ତ ହୋଇଥିଲା । ଏ ତଥ୍ୟ ଆଜି ଅନେକଙ୍କୁ ଅଜ୍ଞାତ ।

ଏମିତି ବହୁ ଅଜ୍ଞାତ ଘଟଣାର ବିବରଣୀ ପ୍ରଦାନ କରିଯାଇଛି ହରିଶ୍ଚନ୍ଦ୍ର ସରକାରଙ୍କ ଲିଖିତ ଏହି 'ବାଲେଶ୍ୱର' ପୁସ୍ତକରେ । ୰ସରକାର ଜଣେ ଐତିହାସିକ ନଥିଲେ, କିନ୍ତୁ ଜିଜ୍ଞାସୁ ମନ ଓ ଅନ୍ୱେଷୀ ଦୃଷ୍ଟି ନେଇ ବହୁ ତଥ୍ୟ ସଂଗ୍ରହ କରି ଏହି ପୁସ୍ତକ ରଚନା କରିଥିଲେ ଶହେବର୍ଷ ତଳେ । ଏହାହିଁ ବାଲେଶ୍ୱର ସଂପର୍କରେ ଓଡ଼ିଆରେ (ପଦ୍ୟାକାରରେ) ଲିଖିତ ପ୍ରଥମ ପୁସ୍ତକ । ଆଜି ହରିଶ୍ଚନ୍ଦ୍ର ସରକାର ଓ ତାଙ୍କର ଏହି ଦୁର୍ଲ୍ଲଭ ଐତିହାସିକ ପୁସ୍ତକ ସଂପର୍କରେ ଅଧିକାଂଶ ବାଲେଶ୍ୱରବାସୀ ଅଜ୍ଞ । ଯାହାହେଉ ୰ସରକାର ମହୋଦୟ ବହୁ କଷ୍ଟ ସ୍ୱୀକାର କରି ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ବିଭିନ୍ନ ଅଞ୍ଚଳ ବୁଲି, ନାନା ତଥ୍ୟ ସଂଗ୍ରହ କରି ଏହି ପୁସ୍ତକ ରଚନା କରି ଆମ୍ଭମାନଙ୍କୁ ସବିଶେଷ ବିବରଣୀ ପ୍ରଦାନ ସହ ଆଲୋକିତ କରିଥିବାରୁ ଚିରକାଳ ଆମ ସ୍ମୃତିରେ ଉଜ୍ଜୀବିତ ହୋଇ ରହିବେ ।

ଶହେ ଦୁଇବର୍ଷ ତଳର ଏହି ଦୁର୍ଲଭ ପୁସ୍ତକଟିକୁ ମୁଁ ସଂଗ୍ରହ କରିଥିଲି ମୋର ବାଲ୍ୟବନ୍ଧୁ ତଥା ଜଣେ ଉତ୍ତମ ପାଠକ ଶ୍ରୀ ସୁରେଶଚନ୍ଦ୍ର ମହାନ୍ତିଙ୍କଠାରୁ । ତାଙ୍କ ପୂଜ୍ୟପିତା, ସ୍ୱାଧୀନତା ସଂଗ୍ରାମୀ ତଥା 'ଦୈନିକ ଆଶା' ଓ 'ପ୍ରଜାତନ୍ତ୍ର'ର ଏକଦା ସଂପାଦକ ୰ରମେଶଚନ୍ଦ୍ର ମହାନ୍ତି ଆମ ଗ୍ରାମ ସୁନହଟସ୍ଥିତ ତାଙ୍କ ପୈତୃକ ବାସଭବନ 'ମାଧବାଳୟ' (୧୯୧୦-୨୦୧୦)ରେ ସ୍ଥାପନ କରିଥିବା 'ଶ୍ରୀକୃଷ୍ଣ ଲାଇବ୍ରେରୀ'ରେ ଏହି ଦୁଷ୍ପ୍ରାପ୍ୟ ପୁସ୍ତକଟି ସାଇତି ରଖିଥିଲେ । ଏହି ଅବକାଶରେ ମୁଁ ସେମାନଙ୍କୁ ମୋର କୃତଜ୍ଞତା ଜଣାଉଛି । ଏଥି ସହିତ 'ସୁବର୍ଣ୍ଣଶ୍ରୀ ପ୍ରକାଶିନୀ' ପକ୍ଷରୁ ଏହି ବହିଟିର ପୁନଃପ୍ରକାଶନ ପାଇଁ ମୋର ପରମକଲ୍ୟାଣୀୟ ଶ୍ରୀମାନ୍ କାଳୀପଦ ପଣ୍ଡା ଦାୟିତ୍ୱ ନେଇ ବିନା ଦ୍ୱିଧାରେ ପ୍ରକାଶ କରିଥିବାରୁ ସେ ମଧ୍ୟ ମୋର ଧନ୍ୟବାଦର ପାତ୍ର । ଅନୁସନ୍ଧିତ୍ସୁ ପାଠକ ଓ ଗବେଷକମାନଙ୍କ କାର୍ଯ୍ୟରେ ଏହି ପୁସ୍ତକଟି ଲାଗିପାରିଲେ ନିଜକୁ କୃତାର୍ଥ ମନେ କରିବି ।

ସୁନହଟ, ବାଲେଶ୍ୱର

ତା ୧-୯-୨୦୧୧ (ଗଣେଶ ଚତୁର୍ଥୀ)

(ସଂପାଦକ)

# ବାଲେଶ୍ୱର ।

ଶ୍ରୀ ହରିଶ୍ଚନ୍ଦ୍ର ସରକାରଙ୍କ ପ୍ରଣୀତ ।

—————:*C*:—————

ସାମନ୍ତ ଶ୍ରୀ ଦ୍ୱାରିଚରଣ ଦାସଙ୍କ ଦ୍ୱାରା
ପ୍ରକାଶିତ ।

—:0:—

BALAORE.
Printed at the Samanta Press
by N. C. Ghose.
1909

—:0:—

ମୂଲ୍ୟ ୲ଂ। ଚରିଅଣା ମାତ୍ର ।

('ବାଲେଶ୍ୱର' ପୁସ୍ତକର ପ୍ରଥମ ସଂସ୍କରଣର ପ୍ରଚ୍ଛଦ)

To

BIRENDRA CHANDRA SEN ESQ.

I. C. S.

Magistrate and Collector

BALASORE

This little work is respectfully

dedicated by permission

by

Samanta Radha Charan Das

Publisher.

## PREFACE

Balasore is one of the most ancient districts of India. It is a narrow strip of land picturesquely situated with the hills on one side and the sea on the other. It occupies a place in the Indian History from the very ancient times up to the present days. It being the Highway between *'Aryabrata'* and *'Dakhinatya'*, it is rich in the antiquities of *Ramayan* and *Mahabharat* (if we are to believe in traditions and the relics found in various parts of the District). In the later period, the Hindus and the Baudhas fought here to assert their religious supremacy. Later on the *Sivaites* and the *Baishnavites* contested here to inculcate their respective tenets.

In the medieval age the Hindus, the Pathans and the Moguls fought here many bloody battles for political supremacy and later on, the Marhattas and the English fought here for the same end in view. It was here, that the principal maritime powers of Europe viz the Portuguese, the Danes, the Dutch, the French and the English fought for the monopoly of the trade in the East. This little book deals with those great events in a concise form in poetry with elaborate notes.

During the time of Sir Charles Elliot, Hunters Imperial Gazetteer were revised and the author, the then Vice-Chairman of the Sudder Local Board, Balasore, was deputed by Mr. Cornish, the then District Magistrate and Chairman of the District Board, to travel over the District and collect materials for the purpose.

This gave the author an opportunity to visit all places of Historical importance in the district and take notes of them. This book contains a description of the places as they were when the author saw them about 20 years ago.

In conclusion the author shall consider himself fortunate if this little book can create a little historical interest in the minds of the readers of Orissa who are so very apathetic to know the history of their own country.

**Balasore**
**The 25th September 1909**

**The author**

# ବାଲେଶ୍ୱର

ଉତ୍ତରେ ମେଦିନୀପୁର, ପଶ୍ଚିମେ ଭୂଧର,
ଦକ୍ଷିଣେ କଟକ, ପୂର୍ବେ ଅସୀମ ସାଗର ।
ମଧ୍ୟେ ଜଗନ୍ନାଥଦାଣ୍ଡ କଟୀରେ ମେଖଳା-
ଇଷ୍ଟକ, କଙ୍କର, ଗେରୁ-ମାଟି ଅଙ୍ଗେ ବୋଳା ।
ସ୍ଥାନେସ୍ଥାନେ ସେତୁମାନ ମେଖଳା-ଯୋଜକ,
ଦୀର୍ଘାକାର ଭୀମକାୟ (ଦେଖି ମନେ) ଉପୁଜେ ଚମକ ।
ଉତ୍ତରେ ନୁଣିଆଯୋରି, ବିଶାଳ ଆକାର, (୧)
ଦକ୍ଷିଣରେ କାଁଶବାଁଶ (୨) ବାନ୍ଧେ ତିନିଧାର ।
ସାନ ବଡ଼ ସେତୁମାନ ସଂଖ୍ୟା ଅଗଣିତ,
କରୁଛି ମେଖଳା ଶୋଭା ମନବିମୋହିତ ।
ଜଗନ୍ନାଥଦାଣ୍ଡ ଦୃଶ୍ୟ ଅତି ମନୋହର,
ଅଛିକି ନ ଅଛି ବିଶ୍ୱେ କୀରତି ସୁନ୍ଦର ।
ମାର୍ଗ ଦୁଇ ପାର୍ଶ୍ୱେ ରାଜେ ମହୀରୁହଚୟ,
ଆତପ ତାପିତ ଯାତ୍ରୀମାନଙ୍କ ଆଶ୍ରୟ ।
ଗୋପାଳ ଗୋରୁର ପଲ ଛାଡ଼ିଣ ପ୍ରାନ୍ତରେ
ଲଭନ୍ତି ବିଶ୍ରାମ ଯଥା ହରଷ ଅନ୍ତରେ ।
ବହୁଦୂର ଦେଶାନ୍ତରୁ ବିହଗ ନିକରେ,
ନିର୍ଭୟେ ଯାପନ୍ତି ନିଶି ତାହାର ଉପରେ ।

ସହସ୍ର ସହସ୍ର ଯାତ୍ରୀ କରନ୍ତି ଗମନ,
ଅଭିଳାଷ ଜଗନ୍ନାଥ ଦେବ ଦରଶନ ।
ପଥିକ ସୁବିଧା ପାଇଁ ଚଟୀ(୩) ସ୍ଥାନେସ୍ଥାନେ,
ପରିପୂର୍ଣ୍ଣ ନାନାପଣ୍ୟେ ବିହିତ ବିଧାନେ ।
ବିରାଜିତ ଧର୍ମ୍ମଶାଳା (୪) ଯାତ୍ରୀଙ୍କ ଆଳୟ,
ଦୁଇପାର୍ଶ୍ୱେ ହର୍ମ୍ମ୍ୟରାଜି ମଧ୍ୟେ ଜଳାଶୟ,
ବିଞ୍ଚଇ ଶୀତଳବାୟୁ ପାଦପ ନିକର,
ସଦା ଉଭା ଭାବେ ରହି ପ୍ରାଙ୍ଗଣ ଭିତର ।
ବିରଚିଲେ ମାତାଦେଶେ ରାଜା ସୁଖମୟ,(୫)
ରଖିଲେ ଭାରତ ମଧ୍ୟେ ସୁନାମ ଅକ୍ଷୟ ।

ତାହାପରେ ରେଳରାସ୍ତା କଣ୍ଠମାଳା ଶୋଭା,
ମନୋହର ଦୁଇ ନର ଅତି ମନୋଲୋଭା ।
ମଧ୍ୟେ ମଧ୍ୟେ "ଇଷ୍ଟେସନ" ପଦକ ଚିକ୍କଣ,
ନାନାରୂପେ ସୁସଜ୍ଜିତ ମାନସ ମୋହନ ।
କିପାଇଁ ଚାଲିବ ଯାତ୍ରୀ ଜଗନ୍ନାଥଦାଣ୍ଡେ,
ଆରାମରେ ବସି ଯାଉଛନ୍ତି କେତେ ଝଣ୍ଡେ ।
ନାହିଁ ବାଟଚଲା ଥକା, ନିର୍ଭୟ ଅନ୍ତରେ
ମାସକର ବାଟ ଚାଲି ଯାଏ ଦିନକରେ ।

ନୀଳଗିରି ଗିରିମାଳା ସୁନୀଳ ବରଣ,
ବାଲେଶ୍ୱର ଶିରଦେଶେ ମୁକୁଟ ଭୂଷଣ !

ପୂରବେ "କୋଷ୍ଟ କେନାଲ" ରଜତ ବଳୟ,
ବାଲେଶ୍ୱର ଚରଣରେ ଶୋଭା ଅତିଶୟ ।
ମଧ୍ୟେ ମଧ୍ୟେ ବିରାଜଇ "ଲକଗେଟ" ମାନ,
କରିବାକୁ ଦୁଇପାଖ ସଲିଳ ସମାନ ।
ତରଣୀ 'ଷ୍ଟିମାର' ଗତି ସୁବିଧା କାରଣ,
ହୋଇଅଛି ଏହି ସବୁ କୌଶଳ ସୃଜନ ।

ବିଶାଳ ବାରିଧି ଊର୍ମି ଗର୍ଜ୍ଜଇ ସୁନୃତେ,
ବାଜେଣି ନୂପୁର ପଦେ ବାଜୁଛି କି ସତେ !

ଉତ୍ତରେ ସୁବର୍ଣ୍ଣରେଖା ସ୍ୱର୍ଣ୍ଣ ପ୍ରସବିନୀ,
ଦକ୍ଷିଣରେ ବୈତରଣୀ ପତିତତାରିଣୀ,
ମଧ୍ୟମେ ବଳଙ୍ଗ ନଦ, ସାଳିନ୍ଦୀ ତଟିନୀ,
ଚିରଜଳ-ଛତ୍ରରୂପେ ଶସ୍ୟ ପ୍ରଦାୟିନୀ ।

ବୈତରଣୀ ନଦୀତଟେ ସ୍ଥିତ ଯାଜପୁର,
ବିବିଧ ଦେବତା ସ୍ଥାନ, ମନ୍ଦିର ପ୍ରଚୁର ।
ବିରୋଜା ଦେଉଳ ଯହିଁ ସକଳ ପ୍ରଧାନ,
ସେହେତୁ "ବିରୋଜା କ୍ଷେତ୍ର" ଯାଜପୁର ନାମ ।
ପୁରାକାଳେ ଓଡ଼ିଶାର ରାଜଧାନୀ ରୂପେ,(୬)
ଧରିଲା ବିଶାଳ ବକ୍ଷେ ଗଜପତି ଭୂପେ ।
ଯବନ ସମରେ ହତ ମୁକୁନ୍ଦ ନରେଶ,
ସେହିଦିନୁ ଯାଜପୁରୁଁ ରାଜପାଟ ଶେଷ,
ତାଙ୍କର ସଚିବ ଶ୍ରେଷ୍ଠ କରି ପଳାୟନ,
ଖୋରଧା ନଗରେ ଯାଇ କଲେ ରାଜପଣ ।
'ସଲିମାନ' ବିତାଡ଼ିତ 'ଇବ୍ରାହିମ ଖାନ',(୭)
ପାଇଥିଲେ ଯାଜପୁରେ ଆଶ୍ରୟର ସ୍ଥାନ ।
'ଆକବର' ପ୍ରତିନିଧି ହୋସେନ ପ୍ରବର,(୮)
ତୋଷିଥିଲେ ଏହିଠାରେ ଉତ୍କଳ ଈଶ୍ୱର ।
ରାଜାଙ୍କ ସାହାଯ୍ୟ ଆଶେ ପଠାଣ ସମରେ,
ପ୍ରବେଶିଲେ ଦୂତବର ଓଡ଼ିଶା ଦେଶରେ ।

ସାଳିନ୍ଦୀ ଦକ୍ଷିଣ କୂଳେ ଭଦ୍ରକ ନଗର,
ବାଲେଶ୍ୱର ଜିଲ୍ଲା ମଧ୍ୟେ ସ୍ଥାନ ସ୍ୱାସ୍ଥ୍ୟକର ।
ଏହିଠାରେ ନିବସନ୍ତି ଅନେକ ପଠାଣ,
'ପଠାଣ ମହଲା' ନାମେ ବିଖ୍ୟାତ ସେ ସ୍ଥାନ ।

ମାନସିଂହ ଅଧିକାର କଲେ ବଙ୍ଗଦେଶ,
ଭାଗଡ଼ା ପଠାଣଗଣ ଏଠାରେ ପ୍ରବେଶ ।(୯)
ବୀରବର 'ଓସମାନ' ପଠାଣ ନୃପତି,
ପରାଜିଲେ ମହାସିଂହେ ଦିଲ୍ଲୀ ସେନାପତି ।(୧୦)
'ହାଇଲେଭେଲ କେନାଲ' ଏହିଠାରେ ସୀମା,
କୃଷକ ସହାୟ ଲାଗି ଯାହାର ଗାରିମା ।

ଦକ୍ଷିଣେ ଧାମନଗର ସୁବିପୁଳ ଗ୍ରାମ
ବହୁ ଧନୀ ପଠାଣଙ୍କ ଯହିଁ ବାସସ୍ଥାନ ।
ଏଠାରେ ବିରାଜେ ଏକ ସର ସୁବୃହତ
ମହାରାଷ୍ଟ୍ର କୀର୍ତ୍ତି ଯହିଁ ଜାଗ୍ରତ ନିୟତ ।
ନାମରେ 'ଜଗୁସାଗର' ସୁବିମଳ ନୀର
ଖୋଳିଲେ ଜଗୁ ପଣ୍ଡିତ ମହାରାଷ୍ଟ୍ର ବୀର ।
ସେକାଳେ ଶୋଭିଲା କୂଳେ ଦୁର୍ଗ 'ନହଜାରୀ'
ନାଶିବାକୁ ଗଡ଼ଜାତ ଭୂପମାନ ଜାରି ।

ଦକ୍ଷିଣ ପୂରବେ ସ୍ଥିତ କନିକା ନଗର,
ରାଜଛତ୍ର ଧରେ ଯଥା ଭଞ୍ଜ ନୃପବର ।
ସ୍ରୋତସ୍ୱତୀ ବୈତରଣୀ, ବ୍ରାହ୍ମଣୀ, ମତାଇ,
ଧାମରା ନାମରେ ଖ୍ୟାତ ତ୍ରିବେଣୀ ମିଳାଇ ।
ବ୍ରାହ୍ମଣୀ, ବୈତରଣୀର ସଙ୍ଗମ ସ୍ଥାନରେ,
ଥିଲା ପୂର୍ବଗଡ଼ ଯଥା ପ୍ରୟାଗ ନଗରେ,(୧୧)
ପ୍ରବଳ ପ୍ଲାବନେ ନଷ୍ଟ ସେ ଗଡ଼ ଏକ୍ଷଣେ,
ରାଜେ ରାଜ-ନିକେତନ କନିକା ସଦନେ ।
ଅତି ପୁରାତନ ଏହି ରାଜବଂଶଧର,
ମୋଗଲ ପଠାଣ ରାଜ୍ୟେ ରାଜିଲା ନଅର ।
ମୋଗଲ ରାଜତ୍ୱ କାଳେ କିଲ୍ଲାଜାତ ନାମ,
ଇଂରାଜଙ୍କ ବନ୍ଦୋବସ୍ତେ ଚିରସ୍ଥାୟୀ ମାନ ।

ତାହାର ଉତ୍ତରେ ସ୍ଥିତ ବାସୁଦେବପୁର,
ଅତି ପୁରାତନ ଗ୍ରାମ ବସତି ପ୍ରଚୁର ।
ମକୁଭୁଇଁ ରଣେ ଜିଣି ଚୌଦ ଜମିଦାର,(୧୨)
ବହୁକ୍ଳେଶେ କରିଥିଲେ ସ୍ୱରାଜ୍ୟ ବିସ୍ତାର,
ଚୌଦଜଣ ଜମିଦାରେ କରି ପରାଜୟ,
ଚୌଦ ବିଜୟୀ ଚୌଧୁରୀ' ଆଖ୍ୟାର ସଞ୍ଚୟ ।
ଅବଶେଷେ କରି ଏହି ସୁପଲ୍ଲୀ ସ୍ଥାପନ,
ପରିବାର ସହ କଲେ ବାସ ନିରୂପଣ ।
ତେର କ୍ରୋଶ ଜମିଦାରୀ ଏକା ଅଧୀଶ୍ୱର,
କମ୍ପିତ ଯାହାଙ୍କ ଡରେ କନିକା ଈଶ୍ୱର ।
ବିଶ୍ୱଧାମେ ଚିରସ୍ଥାୟୀ ଇନ୍ଦ୍ରିୟ ଗୋଚର
କୌଣସି ପଦାର୍ଥ ନାହିଁ, ନାହିଁ ନାରୀ ନର ।
କାଳେ ମକୁଭୂଇଁ ବଂଶ ବିଲିପ୍ତ ବିଳାସେ,
ସତ୍ୟ, ଦୟା, ଧର୍ମ, କର୍ମ ପଳାଇଲେ ତ୍ରାସେ ।
ଚାଟୁକାର ନୀଚଜଣ ସହାୟ ସମ୍ବଳ,
ବାସୁଦେବପୁରେ ତେଣୁ କମଳା ଚଞ୍ଚଳ ।
କାଳେ ନଷ୍ଟ ଜମିଦାରୀ, ସ୍ୱର୍ଣ୍ଣ, ରତ୍ନରାଜି,
ବସନ, ଭୂଷଣ, ବାସ, ଗାଭୀ, ଗଜ, ବାଜୀ ।
ପରିହରି ଭୂଇଁପୁର ବିଷ୍ଣୁଙ୍କ ଗୃହିଣୀ,
କାଶୀନାଥେ ଦୟା କରି ଆନ୍ଦୁଳ-ବାସିନୀ ।(୧୩)

ଅବସ୍ଥିତ ଚୂଡ଼ାମଣୀ ନିକଟେ ତାହାର,
ବିରାଜେ ପ୍ରାଚୀନ ବଂଶ କାନଗୋ ଆଗାର,
ସେକାଳେ ଶୋଭିଲା ତଥା ସୁନ୍ଦର ଭବନ,
ଘାଟ, ବାଟ, ପୁଷ୍କରିଣୀ, ପୁଷ୍ପ ଉପବନ,
ବିଲୁପ୍ତ ସେ ଶୋଭା ଏବେ ନୟନରଞ୍ଜନ,
ଭଗ୍ନ ଭଦ୍ରାସନ, ଶୀର୍ଣ୍ଣ ଅଧିକାରୀଗଣ ।

ଦେଣା ହେତୁ ହସ୍ତାନ୍ତର ବିପୁଳ ସମ୍ପତ୍ତି,
ଏକ୍ଷଣେ ମଣ୍ଡଳବଂଶ ତାର ଅଧିପତି ।(୧୪)

ଭଦ୍ରକ ଉତ୍ତରେ ଶୋଭେ ସୋର ଗ୍ରାମବର
ରାଜଧାନୀ ଥିଲା ଯାହା ମର୍ହଟା ନୃପର ।(୧୫)
ରାଜସ୍ୱ ସଂଗ୍ରହ କାର୍ଯ୍ୟେ ନିଯୁକ୍ତ କରଣ,
ନିବସିଲେ ନାନାସ୍ଥାନେ ସହିତ ସ୍ୱଗଣ ।
ତଲବ ତାଗାଦା ଆଉ କାର୍ଯ୍ୟେ ପ୍ରହରୀର,
ଆଦିଷ୍ଟ ପାୟକଗଣ ସୋଁଟାଧାରୀ ବୀର,
ନିର୍ଭର ଜାଗୀର ଜମି ଅନ୍ନର କାରଣ,
କଲେକ 'ପାୟକ ସାହି' ବାସ ନିରୂପଣ,
ଅଦ୍ୟାପି ବିରାଜେ ସାହି ପୂର୍ବ ନିଦର୍ଶନ,
ନିବସନ୍ତି ଯହିଁ ତାଙ୍କ ବଂଶଧରଗଣ ।

ପ୍ରୋଥିତ ମୃତ୍ତିକା ତଳେ ମୂର୍ତ୍ତି ଅଗଣନ,
ପ୍ରସ୍ତର ନିର୍ମିତ ଦେହ ବିଚିତ୍ର ଗଠଣ,
ହିନ୍ଦୁଙ୍କ ଦେବତା ଅବା ବୌଦ୍ଧ ଅବତାର,
କେ କହିବ ନିଶ୍ଚେ କରି? ଅସାଧ୍ୟ ବ୍ୟାପାର ।(୧୬)

ଉଦ୍ଧବଚରଣ କୀର୍ତ୍ତି ଦୀର୍ଘିକା ଗଭୀର,(୧୭)
ସୁନ୍ଦର ସୋପାନରାଜି ନିରମଳ ନୀର ।
ଧବଳ ଶରୀର ଶୋଭା ବିଶାଳ ଦଲାନ,
ନିରାଶ୍ରୟ ପଥିକର ଆଶ୍ରୟର ସ୍ଥାନ,
ଉତ୍ତରେଶ୍ୱର ବଜାର ନିକଟେ ପ୍ରକାଶ,
ପଥଶ୍ରାନ୍ତ ପାନ୍ଥଜନ ବିଶ୍ରାମ ସକାଶ ।
ମୋକଦ୍ଦମା ପ୍ରିୟ ଏସ୍ଥାନର ବାସିଗଣ,
ନିଜ ଅଙ୍ଗ ଛେଦି ଅନ୍ୟେ ଦୋଷ ଆରୋପଣ ।

ସୋରର ଉତ୍ତର ଦିକେ ସ୍ଥିତ ସେରଗଡ଼,
ବିରାଜେ ଯେଠାରେ ଏକ ତଡ଼ାଗ ସୁନ୍ଦର, (୧୮)

ପ୍ରସ୍ତର ରଚିତ ଘାଟ ସୋପାନ ଆବଳୀ,
ରଖିଛି ଚୈତନ୍ୟ-କୀର୍ତ୍ତି ସତତ ଉଜ୍ଜଳି ।

ବଳଙ୍ଗ ପୁଳିନେ ରାଜେ ନଗ୍ର ବାଲେଶ୍ୱର,(୧୯)
ବିରାଜିତ କାଳେ ଯହିଁ ବାଣିଜ୍ୟ ବିସ୍ତର,
'ବାଣ' ତପେ ତୁଷ୍ଟ ସିନ୍ଧୁ କଲେକ ଅର୍ପଣ,
ସୁବିଶାଳ ଭୂମିଖଣ୍ଡ ନିବାସ କାରଣ,
ତହିଁପରେ ବାଣରାଜା ସ୍ଥାପିଲେ ନଗର,
କ୍ଷୁଦ୍ର କଳେବର ମାତ୍ର ଦୃଶ୍ୟ ମନୋହର,
ବାଲିପରେ ଅବସ୍ଥିତ ତେଣୁ ବାଲେଶ୍ୱର,
ଅଥବା ସ୍ଥାପକ ନାମୁ ଉତ୍ପତ୍ତି ନାମର ।
ଚରିକୋଣେ ରଚି ତାର ମନ୍ଦିର ସୁନ୍ଦର,
ସ୍ଥାପିଲେ ତହିଁରେ ଚରି ଦେବ ମହେଶ୍ୱର ।(୨୦)
ମଧ୍ୟଦେଶେ ନିର୍ମ୍ମାଣିଲେ ଦୁର୍ଗ ଦୃଢ଼ତର,
ବେଷ୍ଟିଲେ ଚୌଦିକେ ତାର ଖାଇ ସୁପ୍ରସର,
'ଉଷା' ଦୁହିତାଙ୍କ ନାମ ତା ନାମକରଣ,
'ଉଷାମେଢ଼' ନାମ ତାର ଘୋଷେ ଜନଗଣ ।
'ଉଷା'କୁ ହରିବା ଆଶେ ଶ୍ରୀକୃଷ୍ଣ ତନୟ, (୨୧)
ମହାଯୁଦ୍ଧେ କରିଥିଲେ ଦୁର୍ଗକୁ ବିଜୟ ।
ସମର ଶୋଣିତପ୍ଳୁତ ଭୂଖଣ୍ଡ ପ୍ରସର,
'ସୁନହଟ' ଗ୍ରାମ ନାମେ ଖ୍ୟାତ ଚରାଚର ।
ନାହିଁ ସେ ଦୁରଗ ଏବେ ସର୍ବଗ୍ରାସୀ କାଳ
ନାଶିଛି ଶରୀର ତାର ସୁଦୃଢ଼ ବିଶାଳ ।
ଖାଇ ଚିହ୍ନ ମାତ୍ର ଏବେ କ୍ଷୀଣ ଅତିଶୟ,
ଦେଉଛି ପୂରବ କୀର୍ତ୍ତି ଲୋକେ ପରିଚୟ ।
ଆଉ ଅଛି ଏକ ସର ନିର୍ମ୍ମଳ ଜୀବନ,
ନବ ରଚିତ 'ମଜିଦ' ପାର୍ଶ୍ୱେ ସୁଶୋଭନ ।

ବିସ୍ତୀର୍ଣ୍ଣ ପ୍ରାନ୍ତର ଏବେ ଦୁର୍ଗ ଅଭ୍ୟନ୍ତର,
ଆଂଶିକ ପୂର୍ଣ୍ଣିତ ମାତ୍ର ପଠାଣ କବର ।
ଯେଠାରେ ବିରାଜୁଥିଲା ରାଜାଙ୍କ ନଅର,
ସେଠାରେ ନିବସେ ଏବେ ଶିବା ବଂଶଧର ।

ଦୁରଗ ଉତ୍ତର ପାର୍ଶ୍ୱ କରି ଅଧିକାର,
ଜୀବଘାତକ କସାଇମାନଙ୍କ ଆଗାର ।
ପୂର୍ବଭାଗେ ବ୍ରଜାନନ୍ଦ ଦେବାନ ଭବନ,(୨୨)
ଯାହାକୁ କାୟସ୍ଥ ପଲ୍ଲୀ କରିଛି ବେଷ୍ଟନ ।
ଦକ୍ଷିଣେ 'ଶୋଣିତ' ଏବେ 'ସୁନହଟ' ନାମ,
କରଣ ବସତି ଏହା ସୁବିପୁଳ ଗ୍ରାମ ।
ରାଧାଶ୍ୟାମ ଦାସ ତହିଁ ସକଳ ପ୍ରଧାନ, (୨୩)
ସଦାବ୍ରତ ହେତୁ ଦେଶ ବିଦେଶେ ସମ୍ମାନ,
ସୁବିସ୍ତୀର୍ଣ୍ଣ ଅଟ୍ଟାଳିକା ସୁଖ ଦରଶନ,
ଇଷ୍ଟକ ରଚିତ ଘର ପୁରୁଣା ଧରଣ ।
ସଦାବ୍ରତ ଅବିରତ ପାଳେ ଦୀନଗଣ,
ଅବାରିତ ଦ୍ୱାର ସଦା ଯାତ୍ରୀ ଅଗଣନ;
ଉଦ୍ୟାନ ମଧ୍ୟରେ ଶୋଭେ ଆବାସ ସୁନ୍ଦର,
କାରୁକାର୍ଯ୍ୟ ବିମଣ୍ଡିତ ନେତ୍ର ତୃପ୍ତିକର,
ରାଜାରାମ ବୁଦ୍ଧିବଳ କରୁଛି ପ୍ରଚାର,
ବାଲେଶ୍ୱରେ ନାହିଁ ଘର ଏମନ୍ତ ପ୍ରକାର ।

ପଶ୍ଚିମେ ବିଭିନ୍ନ ଜାତି କରନ୍ତି ନିବାସ,
କେହି ବା ଧରନ୍ତି ମାଛ କେହି ଋଷବାସ ।
ଅନେକ ପ୍ରାଚୀନ କୀର୍ତ୍ତି ନଗର ମଧ୍ୟରେ,
ବିରାଜିତ ନାନା ସ୍ଥାନେ ବିଭିନ୍ନ ରୂପରେ ।
ନଗରର ମଧ୍ୟସ୍ଥଳେ କଦମ ରସୁଲ,(୨୪)
ପିତୃହନ୍ତା ଆରଂଜେବ କୀରତି ପ୍ରତୁଳ,

ପିତୃହତ୍ୟା ପ୍ରାୟଶ୍ଚିତ୍ତ କରିବା କାରଣ,
ସ୍ଥାନେସ୍ଥାନେ ଧର୍ମ୍ମାଳୟ କଲେକ ସ୍ଥାପନ ।
ଧର୍ମ୍ମଭକ୍ତ ମୋସଲେମ କରି ଋଣେ ଧ୍ୟାନ,
କରାଇବେ ପାପେ ତାଙ୍କୁ ଭବେ ପରିତ୍ରାଣ ।
ସୁପ୍ରଶସ୍ତ ଅଟ୍ଟାଳିକା ବେଷ୍ଟିତ ଉଦ୍ୟାନ,
ଜୀର୍ଣ୍ଣ ଶୀର୍ଣ୍ଣ ଅବସ୍ଥାରେ ଏବେ ବିଦ୍ୟାମାନ ।
ତାହା ମଧ୍ୟେ ଅବସ୍ଥିତ·କବର ପ୍ରାଚୀନ,
ବୀରବର "ମୋସ୍ତଫା"ଙ୍କ (୨୫) ଶବ ଯହିଁ ଲୀନ ।
ରଘୁନାଥଜୀ ଭୋସଲା ନାଗପୁରପତି,
ପ୍ରେରିଥିଲେ ତାଙ୍କୁ ବଙ୍ଗେ କରି ସେନାପତି,
ବଙ୍ଗାଧିପ ଆଲିବର୍ଦ୍ଦି ସହ କରି ରଣ,
ଯବନ ଅଧୀନ ବଙ୍ଗ ଉଦ୍ଧାର କାରଣ,
ମୋସ୍ତଫା ଓଡ଼ିଶା ଲଭି ସନ୍ଧିର ବଳରେ,
ଦଳବଳ ଉପନୀତ ଆସି ବାଲେଶ୍ୱରେ,
ସ୍ଥିର କରି ସ୍ୱର୍ଣ୍ଣରେଖା ତଟିନୀ ସୁନ୍ଦର,
ସୁବିସ୍ତୀର୍ଣ୍ଣ ଓଡ଼ିଶାର ସୀମା ଉତ୍ତରର ।
ଦେବ-ବିପାକେ ବୀର ବିଷମ ପୀଡ଼ିତ,
କରାଳ କାଳ କବଳେ ହୋଇଲେ ପତିତ ।

କିଲ୍ଲା ପୁଷ୍କରିଣୀ ଦେଖ ଉତ୍ତରେ ତାହାର,
ପଠାଣ ନବାବ ବାସ ନିକଟେ ଯାହାର,
ଆବାସ ଅନ୍ଦରେ ଥିଲା ଏହି ସରୋବର,
ଅବଗାହୁଁ ଥିଲେ ତହିଁ ଜନାନା ନିକର,
ଆମୂଳ ଇଷ୍ଟକେ ଏହା ହୋଇଛି ରଚିତ,
ଭୂମିତଳେ ସନ୍ଧି ପଥେ ବଳଙ୍ଗ ଯୋଜିତ ।(୨୬)
ସରସୀ ଉତ୍ତର ଭାଗେ ସିନାନ-ଆଗାର,
ଭଗ୍ନ ଅବଶେଷ ଏବେ ବିଦ୍ୟମାନ ତାର ।

ବିରଚିଲେ 'ତକି' ଏହି ପୋଖରୀ ଆଗାର,
ବାସ କରୁଥିଲେ ତହିଁ ସହ ପରିବାର ।
'ତକି ଭବନ'ର ଚିହ୍ନ ହୋଇଛି ବିନାଶ,
ତାହାସ୍ଥାନେ ମୁସଲେମ ପଲ୍ଲୀ ସୁପ୍ରକାଶ ।
କେତେକାଂଶ କ୍ରୟ କରି କିଶୋରୀମୋହନ,
ବିରଚିଲେ ବିଳାସର ଉଦ୍ୟାନ ଭବନ ।

ବିରାଜେ ସୋହେଲପୁରେ କୀରତି ପ୍ରାଚୀନ,
ମହାରାଷ୍ଟ୍ର ଅଧିକାର ଚିହ୍ନ ସମୀଚୀନ ।
ମୋତିରାମ ଗଢ଼ିଥିଲେ ବିଶାଳ ମନ୍ଦିର,
ଧବଳ ଭୂଧର ସମ ଉନ୍ନତ ଶରୀର,
ଦେଉଳେ ବିରାଜେ ମୂର୍ତ୍ତି ଲକ୍ଷ୍ମୀ-ନାରାୟଣ,
ଭକ୍ତିଭାବେ ଭକ୍ତଗଣ କରନ୍ତି ଦର୍ଶନ ।
ସ୍ଥାପିଲେ ନଗର ମଧ୍ୟେ ବଜାର ପ୍ରଧାନ,
ବିବିଧ ବିପଣି ଶୋଭା 'ମୋତିଗଞ୍ଜ' ନାମ ।
ନିୟୋଜିଲେ ଏହି ଗଞ୍ଜେ ଦେବତା ଉଦ୍ଦେଶ୍ୟେ,
ଅଦ୍ୟାପି ବିରାଜେ ଗଞ୍ଜ ମନୋହର ବେଶେ ।(୨୭)

ଦେଖ 'ଭୟାନିଧିରାମ' କୀର୍ତ୍ତି ନିଦର୍ଶନ,
ଶ୍ୟାମସୁନ୍ଦର ମୂରତି ମୁରଲୀ-ବଦନ,
ନିର୍ମ୍ମାଇଲେ ଶ୍ରୀମନ୍ଦିର 'କର' ମହାଶୟ,
ସମ୍ମୁଖେ ନାଟମନ୍ଦିର 'ମଣ୍ଡଳ' ନିଳୟ,
ପଶ୍ଚିମେ ରାହାସମଞ୍ଚ 'ଅଦ୍ୱୈତ୍ୟ ଗଠଣ'
ବହୁ ଚୂଡ଼ା ବିଭୂଷିତ ମାନସରଞ୍ଜନ ।(୨୮)

ଶ୍ୟାମଭକ୍ତ 'ସାଲବେଗ' ଦର୍ଶନ କାରଣ,
ଶ୍ରୀମନ୍ଦିର ଅଙ୍ଗେ ହେଲା ଗବାକ୍ଷ ରଚନ,
ଜନକ ମୋଗଲ ତାର ଜନନୀ ବ୍ରାହ୍ମଣୀ,
ହିନ୍ଦୁଧର୍ମେ ଦୃଢ଼ମତି ଭକ୍ତ ଶିରୋମଣି,

ଯବନ ଔରସେ ଜାତ ସେହେତୁ ତାହାର,
ମନ୍ଦିର ପ୍ରବେଶେ ନାହିଁ ଥିଲା ଅଧିକାର,
ତେଣୁ ଭକ୍ତଜନ ନିତି ଦର୍ଶନ କାରଣ,
ଦେବ ସପ୍ନାଦେଶ ମତେ ଉପାୟ ସୃଜନ ।(୨୯)

ଶ୍ୟାମଭକ୍ତି ପରାୟଣା ଦାରୀ 'ଶ୍ୟାମା ବାଈ'
ମୋହିଲା ଶ୍ୟାମସୁନ୍ଦର 'ଜୟଦେବ' ଗାଇ,
ନିତି ବସି ଗାଏ ବେଶ୍ୟା ସୁମଧୁର ସ୍ୱରେ,
ଆରତି ଉତ୍ତାରେ ନାଟମନ୍ଦିର ଭିତରେ,
ଦିନକରେ ଝଡ଼ି ବୃଷ୍ଟି ଘୋର ଅନ୍ଧକାର,
ଆକାଶେ ଚପଳା-ଛଟା, ଅଶନି ହୁଙ୍କାର,
ଦୈବ ଦୁର୍ବିପାକେ ପଡ଼ି 'ଶ୍ୟାମ' ଭକ୍ତିମତୀ,
ନ ଆସିଲା ଦେଖିବାକୁ ଦେବଙ୍କ ଆରତି,
ମନେ ଜାଣି ଶ୍ୟାମରାଏ ତାହାର କାରଣ,
ନିଶାଯୋଗେ ସ୍ୱପନରେ ଦେଲେ ଦରଶନ ।(୩୦)

'ବୃନ୍ଦାବନ' ନାମେ ଏକ ସନ୍ନ୍ୟାସୀ ପ୍ରବର,
ଉପାର୍ଜ୍ଜି ପ୍ରାର୍ଥନା ବଳେ ଭୂଖଣ୍ଡ ପ୍ରସର,
ଖୋଳିଲେ ତଡ଼ାଗ ତହିଁ ରୋପିଲେ ଉଦ୍ୟାନ,
ଆଜିଯାଏଁ ବାଲେଶ୍ୱର ବକ୍ଷେ ବିଦ୍ୟମାନ ।
ଯବନ ନୃପତି ଠାରୁ ପ୍ରାପତି କାରଣ,
'ହରନବାବୀ ପାଟନା ବାଗବୃନ୍ଦାବନ' ।(୩୧)

ମଧ୍ୟକାଳେ ବିଦେଶୀୟ ବଣିକ ନିଚୟ,
ଏଠାରେ ସ୍ଥାପିଲେ କୋଠି ବାଣିଜ୍ୟ ଆଳୟ ।
ପ୍ରଥମେ ଆସିଲେ ଏଠା ଜାତି ପୋର୍ତ୍ତୁଗୀସ,
ଦିନାମାର, ଓଲେନ୍ଦାଜ, କ୍ରମେ ଫରାସିସ,
ଇଂରେଜ ତା ପରେ ଆସି ବାଣିଜ୍ୟ କାରଣ,
ଈଶ୍ୱର କୃପାରେ ରାଜ୍ୟ କଲେକ ସ୍ଥାପନ ।

ପର୍ତ୍ତୁଗୀସ ନିଦର୍ଶନ 'ଫିରଙ୍ଗୀ ପାଟନା'(୩୨)
ନାମକରଣ ଶବ୍ଦରୁ ପଡୁଅଛି ଜଣା ।
ଓଲେନ୍ଦାଜ ନିଦର୍ଶନ 'ଓଲେନ୍ଦାଜ ସାହି',
ଭଦ୍ରାଭଦ୍ର ପଲ୍ଲୀ ଏହା ଘର ପକା କାହି,
ବାଣିଜ୍ୟ-ତରଣୀ ଗଢ଼ି ସୁବିଧା କାରଣ,
ଓଲେନ୍ଦାଜ କରିଥିଲେ ନାଳୀଏ ଖନନ,
ଅବଧି ବିରାଜେ ନାଳ 'ଓଲେନ୍ଦା' ନାମରେ,
ସଂକୀର୍ଣ୍ଣ ସେ ଅବୟବ କ୍ରମେ ସମୟରେ ।
ଆଉ ଅଛି ଦୁଇଗୋଟି ପ୍ରାଚୀନ କବର,
ଷୋଳଶ ଛ'ଲବେ ଲେଖା ବକ୍ଷର ଉପର ।(୩୩)
ଫରାସିସ୍ ଅଧିକାରେ ରାଜେ 'ଫ୍ରାନ୍ସଡିଙ୍ଗା',
ଦିନାମାର ଚିହ୍ନ ପଲ୍ଲୀ 'ଦିନାମାର ଡିଙ୍ଗା' ।

ଲଭିଲେ ଇଂରାଜ ଆସି ଜମି ବାରବାଟୀ,
ଅବଧି ବିରାଜେ ତାହା ନାମେ 'ବାରବାଟୀ',
'ମହାଜନ ପଡ଼ା' ତାର ନାମ ଅନ୍ୟତର,
ସୁଖରେ ନିବସୁଥିଲେ ବଣିକ ବିସ୍ତର ।
ସେଠାରେ ଇଂରେଜ କରି କୋଠି ନିରମାଣ,
ଆରମ୍ଭିଲେ ବ୍ୟବସାୟ ଆଣି ଜଳଯାନ,
କ୍ରମେକ୍ରମେ ବହୁ ପ୍ରଜା କଲେ ବସବାସ,
ଶ୍ୱେତକାୟ ଅଧୀନରେ ଶାନ୍ତିର ସକାଶ ।
ଇଂରାଜ ଅଧୀନ ପ୍ରଜା ରକ୍ଷାର କାରଣ,
ତାଙ୍କ ଠାରୁ କରିବାକୁ କର ଆହରଣ,
ନିୟୋଜିଲେ କଟୋଆଳ, ଯାଙ୍କ ବଂଶଧର
କାଳେ ହୋଇଥିଲେ 'ବାରବାଟୀ' ଅଧୀଶ୍ୱର,
ନାହିଁ ସେ ବିଭବ, ଏବେ ଅତି ଦୀନହୀନ,
ଅନ୍ନାଭାବେ ଶୀର୍ଣ୍ଣ ଦେହ, ବସନ ମଳିନ ।(୩୪)

ଇଂରେଜ ବାଣିଜ୍ୟକୋଠି ଅଛି ବିଦ୍ୟମାନ,
ଅତି ଜୀର୍ଣ୍ଣଶୀର୍ଣ୍ଣ ଅଂଗ ସ୍ଥବିର ସମାନ ।
ଅଧିକାରୀ ତାର ଏବେ ଆନନ୍ଦମୋହନ,
ନିବାସ କରନ୍ତି ତହିଁ ସହ ପରିଜନ ।(୩୫)

'ବାରବାଟୀ' ସୀମା ଅଟେ ବଳଙ୍ଗ ତଟିନୀ
ଗଭୀର-ସଲୀଳା ଅତି ପୂରବ ବାହିନୀ ।
ସ୍ରୋତସ୍ୱତୀ ବକ୍ଷେ ଭାସେ ତରୀ ନାନାଜାତି,
ଶ୍ୱେତ, ପୀତ, ନୀଳ, ରକ୍ତ ବାନା ନାନାଭାତି ।
ନାନା ପଣ୍ୟଦ୍ରବ୍ୟେ ପୂର୍ଣ୍ଣ ତରଣୀ ସକଳ,
ନିରନ୍ତର ଯାତାୟାତେ ଅମ୍ବୁଧି ବିକଳ,
କଲିକତା, ଚଟ୍ଟଗ୍ରାମ, ମାନ୍ଦ୍ରାଜ, ବୋମ୍ବାଇ,
ଯାଉଥିଲେ କେତେ ଦ୍ରବ୍ୟ କିଣାବିକା ପାଇଁ ।
ଉଦରେ ଲବଣ ଭରି ଉଡ଼ାଇ ନିଶାଣ,
ଗମୁଥିଲେ ସିନ୍ଧୁପଥେ ଶାଳିଖା ସନ୍ଧାନ ।
ବାହୁଡ଼ିବାବେଳେ ପୂର୍ଣ୍ଣ ନାନାଦ୍ରବ୍ୟ ଜାତେ,
ହଳଦୀ, ଲବଙ୍ଗ, ଗୁଆ, ଜିରା ତେଜପାତେ ।
ଅରୁଆ ଚାଉଳ ନେଇ ମାନ୍ଦ୍ରାଜ ବନ୍ଦର,
ଆଣୁଥିଲେ ନାରିକେଳ, ଧାତୁ ବହୁତର ।
ବର୍ତ୍ତମାନ ସେ ବାଣିଜ୍ୟ ହୋଇଛି ବିଲୀନ,
ବଳଙ୍ଗର ପୂର୍ବଶୋଭା ବିଲୁପ୍ତ, ମଳିନ ।
ବାଷ୍ପପୋତ ରେଲରାସ୍ତା ଯେଦିନ ପ୍ରକାଶ,
ପୂରବ ଗୌରବ ହାୟ ହୋଇଛି ବିନାଶ ।
ଓଡ଼ିଶା ବନ୍ଦର ନାମେ ଖ୍ୟାତ ବାଲେଶ୍ୱର,
ଲକ୍ଷଣ ରହିଛି ଏବେ ପୂର୍ବ ଆଡ଼ମ୍ବର ।
ନାହାନ୍ତି ବଣିକଗଣ, ତରଣୀ ପଟଳ,
ଯାଇଛି କର୍ପୂର ଉଡ଼ି ପଡ଼ିଛି ଅଞ୍ଚଳ ।

ବଂଗଦେଶ ପରିତ୍ୟଜି ତନ୍ତୁବାୟଗଣ,
ନିରାପଦ ହେତୁ ଏଠା ବାସ ନିରୂପଣ
ପରକାଶି ସୁକୌଶଳ ବୁଣିଲେ ବସନ,
ପାରିପାଟ୍ୟେ ବିମୋହିଲେ ଶ୍ୱେତକାୟ ମନ,
ତାଙ୍କଠାରୁ ନେଇ ବସ୍ତ୍ର ପ୍ରେରିଲେ ସ୍ୱଦେଶ,
ସେଠାରେ ତାହାର ହେଲା ଆଦର ବିଶେଷ,
ଉରୁପା ସୁନ୍ଦରିଗଣ କରି ପରିଧାନ,
ବାଲେଶ୍ୱରୀ ସାହାନାର ବଢ଼ାଇଲେ ମାନ ।
ତନ୍ତୀକୁଳ କାଳେ ଥିଲେ ବଣିକ ପ୍ରଧାନ,
ତଟିନୀ ଆବରିଥିଲା ତାଙ୍କ ଜଳଯାନ ।
ମାନ୍ଦ୍ରାଜବାସୀଙ୍କ ସହ କରି କାରବାର,
ହେଲେ ଧନୀ, ସ୍ୱର୍ଣ୍ଣ, ରତ୍ନ ବିଷୟ ଅପାର । (୩୬)

ତାଙ୍କ ପରେ 'କରଗୋଷ୍ଠୀ' ପ୍ରାଧାନ୍ୟ ଲଭିଲେ
ଏକାୟତ୍ୱ ମହାଜନୀ ସର୍ବତ୍ର ସାଧିଲେ ।
ଦିନୁଦିନ ବଢ଼ିଗଲା ତାଙ୍କ ପ୍ରତିପତ୍ତି,
ଲଭିଲେ ବାଣିଜ୍ୟ ବଳେ ଅତୁଳ ସଂପତ୍ତି,
ଇଂରେଜଙ୍କ ପ୍ରାଥମିକ ଅଧିକାର କାଳେ,
କ୍ରୟକଲେ ଜମିଦାରୀ ପାଇ ଫାଙ୍କ ତାଳେ,
'ବାରବାଟୀ' ଅର୍ଦ୍ଧ ଅଂଶ କରି ଅଧିକାର,
ନିର୍ମାଇଲେ ଅଟ୍ଟାଳିକା, ତଡ଼ାଗ, ପ୍ରାକର ।
କପର୍ଦ୍ଦକ ବ୍ୟବହାର କରି ନିବାରଣ,
ପଇସା 'ଚୈତନ୍ୟ କର' କଲେ ପ୍ରଚଳନ ।(୩୭)
ନନ୍ଦକିଶୋର ମଣ୍ଡଳ ଉତ୍ତାରେ ତାହାର,
ବାଣିଜ୍ୟେ ପ୍ରାଧାନ୍ୟ ପଦ କଲେ ଅଧିକାର ।
ସୁପୁତ୍ର ପଦ୍ମଲୋଚନ ଯୋଗ୍ୟତାର ବଳେ,
ବିସ୍ତାରିଲେ ନିଜ ପ୍ରଭା ଓଡ଼ିଶା ମହଲେ ।(୩୮)

କୁବେର କୁଳର କେତୁ ଉଦ୍ଧବଚରଣ,
ମଣ୍ଡଳଙ୍କ ସମକକ୍ଷେ ଦେଲେ ଦରଶନ ।
ଅତି ଶିକ୍ଷାପ୍ରଦ ତାଙ୍କ ଜୀବନ ଚରିତ,
ଅଧ୍ୟବସାୟ ସୁଫଳ ଯହିଁରେ ନିହିତ,
ଯୌବନ ପ୍ରାରମ୍ଭେ ହୋଇ ଘରୁ ବିତାଡ଼ିତ,
ପରିବାର ସହ ମହା ଦୁଃଖେ ଅବସ୍ଥିତ,
ସାମାନ୍ୟ ସମ୍ବଳପରେ କରି ନିରଭର,
ପଶିଲେ ଉଦ୍ଧବ ବୀର ସଂସାର-ସାଗର,
ଆପଣା ଶିଙ୍ଗରେ ମାଟି କରି ଉତ୍ତୋଳନ,
ଜଗତେ ଆପଣା କୀର୍ତ୍ତି କଲେକ ସ୍ଥାପନ ।
ପକ୍ଷୀ-ଚଞ୍ଚୁଚ୍ୟୁତ ବୀଜେ ଭୀମ ତରୁବର,
ଅବିରାମ ବାରିସ୍ରୋତେ ଖୋଦିତ ପ୍ରସ୍ତର,
ପ୍ରାଜ୍ଞଜନ କଲେ ଅଧ୍ୟବସାୟ ବରଣ,
ଆଶା ଫଳବତୀ ତାର ଅସାଧ୍ୟ ସାଧନ,
ଲଭିଲେ ବିପୁଳ ଧନ ସହିଷ୍ଣୁତା ବଳେ,
ଦୀନଦୁଃଖୀ ଲକ୍ଷପତି ଯତନର ଫଳେ ।
ନିଜ ପୃଷ୍ଠଦେଶେ ବୋଝ କଲେକ ବହନ,
ଯାଉଥିଲେ ବାଟେହାଟେ ବିକ୍ରୟ କାରଣ,
ଏ ରୂପେ ସଂଗ୍ରହ କରି ସାମାନ୍ୟ ସଂପତ୍ତି,
ପଣ୍ୟଦ୍ରବ୍ୟ କ୍ରୟ ଲାଗି କଲିକତା ଗତି,
ବାଟରେ ଭେଟିଲେ ଅନୁପ୍ରାମ ମହାମତି,
ଆବଦ୍ଧ ବନ୍ଧୁତା ସୂତ୍ରେ କଲେକ ନିୟତି,
ଦୁଇଜଣଙ୍କର ଧନ ଏକତ୍ରେ ମିଳନ,
ଦୁହିଁଙ୍କ ଅଧ୍ୟବସାୟ ଏକତ୍ରୀକରଣ,
ଧର୍ମପଥେ ଦୁଇଜଣ କଲେ ବିଚରଣ,
କ୍ରମେ ହେଲେ ବାଲେଶ୍ୱରେ ଶ୍ରେଷ୍ଠ ମହାଜନ ।

ଦେଖାଦେଲା ହର୍ମ୍ୟମାଳା ଦୀର୍ଘ କଳେବର,
ଅପରୂପ ଦରଶନ ଅତୀବ ସୁନ୍ଦର,
ଦୋଳ, ଦୁର୍ଗୋତ୍ସବ ଆଦି ଧର୍ମ ଆଚରଣ,
ନୃତ୍ୟଗୀତ ଆନନ୍ଦରେ ପୂରିଲା ଭବନ ।
ଶୋଭିଲା ବଳଙ୍ଗ ବକ୍ଷେ ତରୀ ନାନାମତ,
ବାଣିଜ୍ୟ ବ୍ୟାପାରେ ଯାହା ନିଯୁକ୍ତ ସତତ ।
ଧନଭାରେ ଅବନତ ଉଦ୍ଧବ ଚରଣ,
ଧର୍ମଭାବେ ହୃଦ ପୂର୍ଣ୍ଣ ସହାସ୍ୟ ଆନନ,
ମନ୍ଦିର, ତଡ଼ାଗ, ଘାଟ କଲେକ ନିର୍ମାଣ,
ଲୋକହିତ ସାଧନରେ ସଦା ଆଗୁଆନ,
ନାନାସ୍ଥାନେ ବିରାଜଇ ତାର ନିଦର୍ଶନ,
'କୀର୍ତ୍ତିଯସ୍ୟ ସଜୀବତି' କର ଦରଶନ ।(୩୯)

ଉଠିଲେ ଦେ ବଂଶଧର ଲବଣ ବ୍ୟାପାରେ,
ଶ୍ୟାମାନନ୍ଦ ଦେଙ୍କ ନାମ ଘୋଷେ ଓଡ଼ିଶାରେ,
ଓଡ଼ିଶା ଦୁର୍ଭିକ୍ଷ କାଳେ ହେଲେକ ସହାୟ,
ବଞ୍ଚାଇଲେ ଦୁଃଖୀଜନେ ଧନ କରି ବ୍ୟୟ,
ତେଣୁ ପରାପତ ପଦ 'ରାୟବାହାଦୁର'
କ୍ରମଶଃ ବଢ଼ିଣ ହେଲେ 'ରାଜା ବାହାଦୁର' (୪୦)

ଧରମ ଉଦ୍ଦେଶେ କର୍ମ କରଇ ଯେ ଜନ,
ଜଗତେ ତାହାର କୀର୍ତ୍ତି ରହେ ଅନୁକ୍ଷଣ,
ଥାଆନ୍ତି ପ୍ରସନ୍ନ ବିଧି ସଦା ତାଙ୍କ ପ୍ରତି,
ଦିନଦିନ ପ୍ରସାରିତ ବାଟ ଯେ ମୁକତି,
ରାଧା, ଶ୍ୟାମ, ଉଦ୍ଧବଙ୍କ ନାମ ସେ କାରଣ,
ବିଘୋଷିତ ହେଉଅଛି ଓଡ଼ିଶା ଭୁବନ ।
ତୋଷାମୋଦେ ଯେହୁ ଜନ ମନ ଅକିଞ୍ଚନ,
ଲଭିବାକୁ ନାମ, ଯଶ, ଚେଷ୍ଟା ଅକାରଣ,

ହୃଦ ତା'ର ଅପ୍ରସର, ବଚନ ମଧୁର,
ମହାକାଳ ଫଳ ପ୍ରାୟ ଦର୍ଶନ ଚିକୁର,
ଦରିଦ୍ର ପୀଡ଼ନ କରି ତୋଷେ ଅନ୍ୟ ଜଣ,
ଈଶ୍ୱର ନୁହନ୍ତି କଦା ସେ ଜନେ ପ୍ରସନ୍ନ,
ଧନ, ଜନ, ଯଉବନ ଅଛଇ ଯାହାର
କରିବା ଉଚିତ ତାର ସଦା ସୁଆଚାର,
ଚାଟୁକାର ବାକ୍ୟ କଦା ନ କର ଶ୍ରବଣ,
ଜାଣ ତାର ବିଷକୁମ୍ଭ ମଧୁର ବଦନ ।
ଜଳ ଉଛ ନୀଚ ତାର ଜିହ୍ୱାର ଅଗ୍ରତେ
ନିଜ ସ୍ୱାର୍ଥେ ବିରାଜିତ ସଦା ମନ ପଥେ,
ପ୍ରଭୁଙ୍କ ଅନ୍ୟାୟ କାର୍ଯ୍ୟେ ହୁଅଇ ସହାୟ,
ଅଥବା ଦେବାକୁ ବାଧା ମନେ ପାଏ ଭୟ,
ସୌଭାଗ୍ୟ ବାନ୍ଧବ ସେ ଯେ ମନେ ଜାଣ ସ୍ଥିର,
ଦୁଃଖ କାଳେ କଦା ତାର ନ ଦିଶିବ ଶିର ।
ଅତଏବ ଭାଇ ସତ୍ୟ-ଧର୍ମେ ଦିଅ ମନ,
ଅକପଟେ କର ଦୁଃଖୀ ଦୁଃଖ ବିମୋଚନ,
ସଦା ସତ୍ୟପଥେ ଭାଇ କର ବିଚରଣ,
ଦ୍ୱେଷ, ହିଂସା ସର୍ପ ସମାନରେ ବିସର୍ଜନ,
ସତକର୍ମେ ସାଧୁ ସଂଗେ ଦିଅ ନିଜ ମତି,
ଜୀବଗଣ ହିତ ଅର୍ଥେ ନିୟୋଗ ଶକତି,
ନିଜର ପ୍ରଶଂସା ଶୁଣି ନ ହୁଅ ପ୍ରମତ୍ତ,
ବିଷୟ ବାସନା ପ୍ରତି ଚିତ୍ତ ଅନାସକ୍ତ,
ନିଜ ସତକର୍ମ ଫଳ ସମର୍ପି ଈଶ୍ୱରେ,
ଯଦି ରଖିବାକୁ ଚାହଁ କୀର୍ତ୍ତି ଜଗତରେ ।

ବଙ୍କଙ୍ଗ ତଟିନୀ ତଟେ ସୋପାନ ଚିକ୍କଣ,
ଇଷ୍ଟକ ରଚିତ ଦେହ ନୟନ-ରଞ୍ଜନ,

'ବାଲିଘାଟ' ନାମ ତାର ଉପରେ ଦଲାନ,
ବିରାଜେ ନିକଟେ ତାର ପ୍ରଶାନ୍ତ ଶ୍ମଶାନ,
ଦଲାନ ଉତ୍ତରେ ଶିବ-ମନ୍ଦିର ବିହରେ,
ଉଦ୍ଧବଚରଣ କୀର୍ତ୍ତି ପ୍ରକାଶେ ସାଦରେ,
ବାଲେଶ୍ୱରବାସୀ ସୁଖେ କରନ୍ତି ସିନାନ,
ତପସ୍ୱୀ ସନ୍ନ୍ୟାସିଗଣ ଯୋଗ-ଧ୍ୟାନ ସ୍ଥାନ ।
ବାଇଶ ପାହୁଛେ ଘାଟ ହୋଇଛି ନିର୍ମାଣ,
ପ୍ରତି ପାହୁଛେ ଉଦ୍ଧବ ନାମ ବର୍ତ୍ତମାନ,
ଘାଟ ଦେଇ ଗତି ବିଧି କରିବ ଯେ ଜନ,
ନାମ ପରେ ପଦଧୂଳି କରିବ ଅର୍ପଣ,
ବହୁବ୍ୟୟେ କରି ସେହି ଘାଟ ସଂଗଠନ
ଅପରେ କରନ୍ତେ ରାଜ ପଦ ଅକିଞ୍ଚନ
ଉନ୍ନତ ଉଦ୍ଧବ ମନ ଗତି ଧର୍ମପଥେ,
ନତଶିରେ ପଦରଜ ନେଲେ ହୃଷ୍ଟଚିତ୍ତେ । (୪୧)

କ୍ୟାଥଲିକ ଧର୍ମାଳୟ ଉଚ୍ଚ କଳେବର,
ବାଲେଶ୍ୱର ମଧ୍ୟସ୍ଥଳେ ଶୋଭା ମନୋହର,
ସୁଦୃଶ୍ୟ ସୁନ୍ଦର ହର୍ମ୍ୟ ବିଶାଳ ଆକାର,
ନଗର ମଧ୍ୟରେ ନାହିଁ ଉପମା ଦେବାର,
ପ୍ରଭାମୟୀ ମେରୀ ମୂର୍ତ୍ତି ତହିଁରେ ବିହରେ,
ବିଭୂଷିତା ଯେହ୍ନେ ଦେବୀ ହିନ୍ଦୁଙ୍କର ଘରେ,
କୁସୁମ, ନୈବେଦ୍ୟ, ଧୂପ, ଦୀପ ଉପହାରେ,
ପୂଜନ୍ତି ଖ୍ରୀଷ୍ଟାନଗଣ ପ୍ରତି ରବିବାରେ । (୪୨)

ଇଂରେଜ ଓଡ଼ିଶା ଖଣ୍ଡ କରି ଅଧିକାର,
ମନ ଦେଲେ ନାଶିବାକୁ ପୂର୍ବ ଅବିଚାର,
ସ୍ଥାପିଲେ ବିଚାରାଳୟ ସହର ମଧ୍ୟରେ,
ବିନଷ୍ଟ କଚେରି ଘର ବଜ୍ର ପତନରେ ।

ବଜ୍ରପାତେ ପୋଡ଼ିଗଲା ବିଚାର ଆଳୟ,
ପୋଡ଼ାବଂଗଳା ନାମରେ ସ୍ଥାନ ପରିଚୟ
ନାହିଁ ସେ କଚେରି ଚିହ୍ନ, ପାଇଛି ବିନାଶ
ସ୍ଥାନ ନିର୍ଣ୍ଣୟ ଫଟକ-ସ୍ତମ୍ଭରୁ ପ୍ରକାଶ,
ସୁବିସ୍ତୀର୍ଣ୍ଣ ହତା ମଧ୍ୟେ ପଲ୍ଲୀ ବିରାଜିତ
ନିବାସୀ ଅଭାବେ କେତେ ଅବଧି ପତିତ । (୪୩)

ଗିରିଜା ପଶ୍ଚିମେ ରାଜେ ନାନା ଅଦାଲତ,
ହୁକୁମ ହେଉଛି ଯହିଁ ଖଲାସ ହାଜତ ।
ସୁଦୀର୍ଘ ସୁଉଚ୍ଚ ଏହି କଚେରି ଭବନ,
ପାଏବାଟ ଯୋଡ଼ି ଅଛି ତାର ଆୟତନ ।
ମାଜିଷ୍ଟ୍ରେଟ, ମୁନସେଫ, ଡେପୋଟିର ଦଳ
ବସିଛନ୍ତି ଯଥାସ୍ଥାନେ ଆସନ ଉଜ୍ଜ୍ୱଳ,
ଖୁଦୁରିଆ, ଅନାହାରୀ ହାକିମ ନିକର,
ଶୋଭନ୍ତି ତା ମଧ୍ୟେ ଯଥା ଖଦ୍ୟୋତର କର ।
ଉକିଲ ମୋକ୍ତାରଗଣ ସଦା ବ୍ୟସ୍ତ ଚିତ୍ତେ,
ବୁଲୁଛନ୍ତି ଫରିଆଦି ଆସାମୀ ସହିତେ,
କେହି ବଟବୃକ୍ଷ ମୂଳେ ବିଛାଇ ଆସନ,
ଚାହିଁଛନ୍ତି ମୋକେଲଙ୍କୁ ସତୃଷ୍ଣ ନୟନ,
ବୁଲନ୍ତି ଟାଉଟରଗଣ ଅନ୍ୱେଷି ଶିକାର,
ପାତି ମୋକ୍ତାର ଚିହ୍ନିତେ ମାତ୍ର ଅଧିକାର,
କେରାଣି, ମୋହରିଗଣ ହୋଇ ଶ୍ରେଣୀବଦ୍ଧ,
ହାକିମ ହୁକୁମ କରୁଛନ୍ତି ଲିପିବଦ୍ଧ,
ପ୍ରସାରି ଦକ୍ଷିଣେତର କର କେହୁ ଜଣ,
କରୁଛନ୍ତି ଅନ୍ୟଠାରୁ ଧନ ଆକିଞ୍ଚନ,
ଆଶା ଅନୁରୂପ ଧନ ନ ପାଇ ସତ୍ୱରେ,
କରନ୍ତି ଟାଳମଟାଳ ପ୍ରାର୍ଥୀଙ୍କ କାର୍ଯ୍ୟରେ ।

ହାଙ୍କୁଛନ୍ତି ଚପରାଶୀ 'ଅମୁକ' ହାଜର,
ଦୌଡୁଛନ୍ତି ପକ୍ଷଗଣ ନଦେଇ ଉତ୍ତର ।
ଥାଉବା ନ ଥାଉ କାର୍ଯ୍ୟ ସମସ୍ତେ ଚଞ୍ଚଳ,
ସ୍ଥିର ହୋଇ ବସିବାର ନୁହଇ ଏ ସ୍ଥଳ ।

ତାହାର ଦକ୍ଷିଣେ ରାଜେ ରମ୍ୟ ହର୍ମ୍ୟଚୟ,
ପ୍ରାଙ୍ଗଣେ ଶୋଭିତ ପୁଷ୍ପ ଶ୍ୱେତାଙ୍ଗ ଆଳୟ,
ରମଣୀୟ ଘାଟ ବାଟ ବିସ୍ତୀର୍ଣ୍ଣ ଉଦ୍ୟାନ,
ସୁଖଶାନ୍ତି ବିରାଜିତ ଯେହ୍ନେ ଇନ୍ଦ୍ରଧାମ ।

ସନ୍ନିକଟେ ରାଜେ ଏକ ଦେଉଳ ପ୍ରାଚୀନ,
ଦେବଦେବ ମହାଦେବ ଯହିଁରେ ଆସୀନ,
ନାମ ତାଙ୍କ ଝାଡ଼େଶ୍ୱର ଦେବତା ଜାଗ୍ରତ,
ବାଲେଶ୍ୱରବାସୀ ଯାଙ୍କୁ ପୂଜନ୍ତି ନିୟତ,
ଜାଗର ବାସରେ ଏଠା ମେଳା ମନୋହର,
କିଣାବିକା ଲାଗି ଥାଏ ଦ୍ରବ୍ୟ ବହୁତର,
ଧାର୍ମିକ ଲାଲମୋହନ କରି ବହୁ ବ୍ୟୟ,
ନିର୍ମାଇଲେ ଏହିଠାରେ ଅତିଥି ଆଳୟ ।
ଜୀର୍ଣ୍ଣ ସେ ଆଳୟ ଏବେ କାଳ ପ୍ରତିକୂଳେ,
କିଛିକାଳ ପରେ ଲୋପ ପାଇବ ସମୂଳେ ।

ସୁବିଖ୍ୟାତ ବୀରବର ଭାସ୍କର ପଣ୍ଡିତ,
ନାଗପୁର ସେନାପତି ଭାରତ ବିଦିତ,
ଆସିଥିଲେ ବଂଗଦେଶ ବିଜୟ କାରଣ,
ସହକାରୀ ମୋସ୍ତଫା ଖାଁ ସେନାନୀ ଯବନ,
ସନ୍ଧିବଳେ ଓଡ଼ିଶାକୁ କରି ଉପାର୍ଜନ,
ବାଲେଶ୍ୱରେ ସୈନ୍ୟ ସହ ସ୍ଥାପିଲେ ଆସନ,
ଯେଉଁଠାରେ କରିଥିଲେ ବାସ ନିରୂପଣ
ନିଜ ନାମୁ ନାମ ତାର କଲେ ଅରପଣ,

'ଭାସ୍କରଗଞ୍ଜ' ଆଖ୍ୟାରେ ବିଦିତ ସେ ଗ୍ରାମ,
କଟକ ସ୍ଥାପନ ହେତୁ ଉପଯୁକ୍ତ ସ୍ଥାନ,
ଝାଡ଼େଶ୍ୱର ଦେବାଳୟ କରି ବିରଚନ,
ଅର୍ପିଲେ ଭାସ୍କରଗଞ୍ଜେ ସେବାର କାରଣ,
ଅବଧି ବିରାଜେ ଗ୍ରାମ ଦେବ ଅଧୀନରେ,
ଘୋଷଇ 'ଭାସ୍କର' ନାମ ସଂସାର ଭିତରେ । (୪୪)
ନିକଟେ 'ବିଚରଗଞ୍ଜ' ପାନ୍ଥଙ୍କ ନିବାସ,
ପାଦରି 'ବିଚରି' କଲେ ଯାତ୍ରୀଙ୍କ ସକାଶ । (୪୫)

ପୂର୍ବଭାଗେ ଅବସ୍ଥିତ ପୁର୍ଣ୍ଣା ବାଲେଶ୍ୱର,
ଯେଉଁଠାରେ ବିରାଜନ୍ତି ବାଣ ମହେଶ୍ୱର,
ସ୍ଥାପିଲେ ଏ ମହାଦେବେ ମହାରାଜା ବାଣ,
କର ମହାଶୟ କଲେ ମନ୍ଦିର ନିର୍ମାଣ ।(୪୬)

'ଫ୍ରାନ୍ସଡିଙ୍ଗା' ଅବସ୍ଥିତ ପୂରବେ ତାହାର,
ଜାଗରୁକ ଯାହାପାଇଁ ଫ୍ରାନ୍ସ ଅଧିକାର,
ନ ଚାଲେ ଇଂରାଜ ବିଧି ଏହି କ୍ଷୁଦ୍ରସ୍ଥଳେ,
ପିଠିଫୋଡ଼ା ଉଡ଼ାପର୍ବ ହେଉଛି ସବଳେ । (୪୭)

ତାହାର ପୂରବ ଭାଗେ ବିଶାଳ ସାଗର,
ଭୀଷଣେ ଗର୍ଜନ ସଦା ଊର୍ମି ଭୟଙ୍କର ।
ବିରାଜେ ତାହାର କୂଳେ ସୁପବିତ୍ର ସ୍ଥାନ,
ଦ୍ୱାପରେ ପାଣ୍ଡବେ ଯହିଁ କଲେକ ସିନାନ ।
ଲଭିବାକୁ ଏକବର୍ଷ ଅଜ୍ଞାତନିବାସ,
ଯେଉଁକାଳେ କରିଥିଲେ ଓଡ଼ିଶା ପ୍ରବାସ ।
ତା ନାମ 'ପାଣ୍ଡବଘାଟ' ବରଷକୁ ଥରେ,
ପଡ଼ଇ ବାରୁଣୀ ଯୋଗ ଚଇତ୍ର ମାସରେ । (୪୮)

ଚାନ୍ଦିପୁର ଉପକୂଳ ତାହାର ଉତ୍ତର,
ଶୋଭିଲା ବଂଗଳା ଯହିଁ କାଳେ ବହୁତର,

ନିଦାଘେ ଶ୍ୱେତାଙ୍ଗ କେତେ ସ୍ତ୍ରୀ ବାଳକ ସହ,
ସ୍ୱାସ୍ଥ୍ୟ ଲୋଡ଼ିବାକୁ ଗମୁଥିଲେ ଅହରହ ।
ଗୋଳାଗୁଳି ପରୀକ୍ଷାର ସ୍ଥାନେ ପରିଣତ,
ଭୀଷଣ କମାଣ ଏବେ ଗରଜେ ନିୟତ । (୪୯)

ବଳଙ୍ଗ ଅପର ତଟେ ସମୁଦ୍ର କୂଳରେ,
ରାଜେ 'ବଳରାମଗଡ଼' ଆବୃତ ବନରେ,
ବଳରାମ ଭୂଇୟାଁଙ୍କ ଆବାସ ସୁନ୍ଦର,
ଶୋଭୁଥିଲା କାଳେ ଏହି ଅରଣ୍ୟ ଭିତର ।
ସୁଶୋଭିତ ଜନପଦ ଥିଲା ବହୁତର,
ବାସ କରୁଥିଲେ ନାନାଜାତି ନାରୀ ନର ।
ଆରଂଜେବ ଅଟକରୁ ଲଭି ଅବସର,
ଏହି ବାଟେ ଗମିଥିଲେ ଶିବାଜୀ ପ୍ରବର ।
ଛୟାଳିଶ ଛୟାଳାବି, ସମ ମହାକାଳ,
ନାଶିଲା ସମୁଦ୍ରକୂଳ କବଳେ କରାଳ,
ଉତ୍ତାଳ ତରଙ୍ଗଚୟ ପବନ ସହାୟ,
ବିନାଶିଲା ଜନପଦ ଦୁର୍ଗ ମହାକାୟ,
ବିନଷ୍ଟ ହେଲାକ ଗ୍ରାମ, ଲୋକ, ଲୋକାଳୟ,
ଗୋରୁ, ଘୋଡ଼ା, ଛାଗ, ମେଷ, ମହିଷ ଦୁର୍ଜୟ,
ଅରଣ୍ୟରେ ଆବରିଲା ଘନ ଜନପଦ,
ଶାର୍ଦ୍ଦୁଳ, ଭଲ୍ଲୁକ, ସର୍ପ, କୁରଙ୍ଗ ଆସ୍ପଦ ।
ପୂରବ ସଂପଦ ଚିହ୍ନ ହେଲା ଅନ୍ତର୍ଦ୍ଧାନ,
ଅଛି ମାତ୍ର ସ୍ଥାନେସ୍ଥାନେ ଦାଣ୍ଡ ଚିହ୍ନମାନ । (୫୦)

ବାଲେଶ୍ୱର ପଶ୍ଚିମରେ ରେମୁଣା ସୁଗ୍ରାମ,
ଯହିଁ ରାଜେ କ୍ଷୀରଚୋରା ଗୋପୀନାଥ ଧାମ ।
ଗଜପତି ନରପତି କୀର୍ତ୍ତି ମନୋହର,
ବିରାଜେ ମୋହନ ମଠ ଦେଉଳ ସୁନ୍ଦର,

ଉତ୍କଳେ ବୈଷ୍ଣବଧର୍ମ ପ୍ରଚାର କାରଣ,
ଭୂପତି ଆଦେଶେ ହେଲା ଦେଉଳ ଗଠଣ ।
କାଳ ସହକାରେ ଜୀର୍ଣ୍ଣ ଦେଉଳ ପ୍ରକାର
ଉଦ୍ଧବ ପୋଥାଳ ତାର କଲେକ ସଂସ୍କାର । (୫୧)
ଧାର୍ମିକ ଲାଲମୋହନ ବଦାନ୍ୟ ହୃଦୟ,
ନିର୍ମାଇଲେ ଏହିଠାରେ ଅତିଥି ଆଳୟ ।

କ୍ଷୀରଚୋରା ଗୋପୀନାଥ ଏ ନାମ କିପାଇଁ ?
ସେକଥା ବୋଲିବୁଁ ମନ ଦେଇ ଶୁଣ ଭାଇ ।
ପରମ ବୈଷ୍ଣବ, ଭକ୍ତ ଶ୍ରୀପୁରି ଗୋସାଇଁ
ଆସିଥିଲେ ଏ ସ୍ଥାନକୁ ଦରଶନ ପାଇଁ,
ଦେଖି କ୍ଷୀରିଭୋଗ କଲେ ମନରେ ବିଚାର,
କରନ୍ତି ପ୍ରସାଦ ସେବା ପାଏଁ କି ପ୍ରକାର ।
ଭକତବତ୍ସଳ ପ୍ରଭୁ ଭକ୍ତ ମନ ଜାଣି,
ରଖିଲେ ପ୍ରସାଦ କ୍ଷୀରି କିଛି ପାଶେ ଆଣି ।
ଅମଣିଆ ତାଳିମାରି ଯେକାଳେ ପୂଜାରୀ,
କବାଟକୁ ଆଉଜାଇ ଚାଲିଲା ବାହାରି,
ଦେବ ଗୋପୀନାଥ ନିଜ ବସ୍ତ୍ରରେ ଘୋଡ଼ାଇ,
ଏକହାଣ୍ଡି କ୍ଷୀରିଭୋଗ ରଖିଲେ ଲୁଚାଇ,
ଅର୍ଦ୍ଧରାତ୍ରେ ପୁଜାରୀକୁ ବୋଇଲେ ସ୍ୱପ୍ନରେ,
ଯାଅ ବେଗେ ମୋର ଭକ୍ତ ଶୋଇଛି ଦାଣ୍ଡରେ –
ଦିଅ କ୍ଷୀରି । ଚେତା ପାଇ ପୁଜାରୀ ବ୍ରାହ୍ମଣ,
ପୁରି ଗୋସାଇଁଙ୍କୁ କ୍ଷୀରି ଦେଲେ ତତ୍‌କ୍ଷଣ ।
ଶ୍ରୀପୁରି ପ୍ରସାଦ କ୍ଷୀରି ଖାଇ ପରିତୋଷ,
ସେହିଠାରୁ କ୍ଷୀରଚୋରା ନାମରେ ବିଘୋଷ ।

ଜଳେଶ୍ୱର ଛାଡ଼ି ପ୍ରଭୁ ଚୈତନ୍ୟ ଗୋସାଇଁ,
ଆସିଥିଲେ ଗୋପୀନାଥ ଦରଶନ ପାଇଁ ।

ବାସ ଏଠା ବହୁ ଶିଳ୍ପୀ, ସୁତାର, କଂସାର,
ବଂଗଦେଶେ ଯାହାଙ୍କର ଭାରି କାରବାର ।(୫୨)
ନିକଟେ ବିରାଜେ ଦେବ ଗଡ଼ଗଡ଼େଶ୍ୱର,
କେଶରୀ ବଂଶଜ ଭୂପ ଯଯାତି ପ୍ରବର,
ବୌଦ୍ଧଧର୍ମ ନାଶ ହେତୁ କଲେକ ପ୍ରତିଷ୍ଠା,
ଓଡ଼ିଶାର ପ୍ରାନ୍ତଭାଗେ ହୋଇ ଇଷ୍ଟ ନିଷ୍ଠା,
କାଳେ ଭଗ୍ନ ହୋଇଗଲା ଜୀର୍ଣ୍ଣ ଦେବାଳୟ,
ଗଢ଼ିଲେ ଦେଉଳ 'ନବ ମିତ୍ର' ମହାଶୟ । (୫୩)

ରେମୁଣା ପଶ୍ଚିମେ ସ୍ଥିତ ମିତ୍ରପୁର ଗ୍ରାମ,
ନୀଳଗିରି ପାଦଦେଶେ, ଖ୍ରୀଷ୍ଟାନଙ୍କ ଧାମ,
ପ୍ରଶସ୍ତ ସଡ଼କ ଏକ କରି ନିରମାଣ,
ଏଲେନ ସାହେବ କଲେ ଶିକାରର ସ୍ଥାନ ।
କରିଥିଲେ ଏହିଠାରେ କୋଠି ନିରମାଣ,
ଅବଧି ବିରାଜେ କୋଠି ଅଧୀନେ ଖ୍ରୀଷ୍ଟାନ ।
ବ୍ୟାପଟିଷ୍ଟ ଖ୍ରୀଷ୍ଟଧର୍ମ ସଂପ୍ରଦାୟଗଣ,
ଚାଷର ସୁବିଧା ହେତୁ ବସତି ସ୍ଥାପନ । (୫୪)

ଉତ୍ତରରେ ଗଡ଼ପଦା ଗ୍ରାମ ଅବସ୍ଥିତ,
ଭୂସ୍ୱାମୀ ଯାହାର ଭୂୟାଁ ନାମେ ଅଭିହିତ ।
ଦ୍ରାବିଡ଼ ବ୍ରାହ୍ମଣ ବଂଶେ ତାଙ୍କର ଜନମ,
ବିଞ୍ଛ ପୋତେଶ୍ୱର ଭଞ୍ଜ ପୁରୁଷ ପ୍ରଥମ,
ରାହୁଗ୍ରସ୍ତ ନିଶାକର ଜାହ୍ନବୀ ଜୀବନେ,
ଓଡ଼ିଶା ନୃପତି ବ୍ୟସ୍ତ ଭୂମି ବିତରଣେ,
ଉଦୟପୁର ଶାସନ ଭଞ୍ଜେ କଲେ ଦାନ,
ସେହିଦିନୁ ପଣ୍ଡିତଙ୍କ ବଢ଼ିଲା ସମ୍ମାନ ।
ସର୍ବେଶ୍ୱର ଭଞ୍ଜ ତାଙ୍କ ପୁରୁଷ ଅଷ୍ଟମ,
ଲୋଭ ପରବଶ ହୋଇ ତ୍ୟଜିଲେ ଧରମ,

ଥିଲେ ହିନ୍ଦୁଜାତି ଶ୍ରେଷ୍ଠ ହେଲେକ ପଠାଣ,
ରକ୍ଷାକଲେ ଜମିଦାରୀ ନାଶି ଜାତି, ମାନ । (୫୫)

ଏହି ଗ୍ରାମେ ରାଜେ ଏକ ସୁବିଶାଳ ସର,
ଦୈର୍ଘ୍ୟ ପ୍ରସ୍ଥେ ଅର୍ଦ୍ଧକ୍ରୋଶ ନାମ ବିଦ୍ୟାଧର,
ବିଦ୍ୟାଧର ନାମେ ମନ୍ତ୍ରୀ ଓଡ଼ିଶା ଭୂମିର,
ଖୋଳାଇଲେ ରାଜାଦେଶେ ଏହି ସରୋବର,
ନୃପେନ୍ଦ୍ର ପୁରୁଷୋତ୍ତମ ଦେବ ମହାମତି,
ଯେକାଳେ ଜାହ୍ନବୀ ସ୍ନାନେ ବଳାଇଲେ ମତି,
ସ୍ଥିରକଲେ ମହାରାଜା ଧାର୍ମିକ ପ୍ରଧାନ,
ଅନ୍ୟର ଖୋଦିତ ସରେ ନ କରିବେ ସ୍ନାନ । (୫୬)

ସୁବର୍ଣ୍ଣରେଖା ତଟିନୀ ତଟେ ଜଳେଶ୍ୱର,
ବହୁ ଜନାକୀର୍ଣ୍ଣ ଗ୍ରାମ ଦୃଶ୍ୟ ମନୋହର ।
ଏଠାରେ ଶୋଭିଲା କାଳେ ମଜିଦ ସୁନ୍ଦର,
ନଦୀ ଗର୍ଭେ ଲୀନ ଏବେ ତାର କଳେବର ।
ଇଂରାଜ ବଣିକ କଲେ କୋଠି ସୁପ୍ରସର,
ନୀଳକୋଠି ନାମେ ଯାହା ଖ୍ୟାତ ଚରାଚର,
କାନ୍ଥୁଡ଼ାରେ ପରିଣତ କୋଠି ବର୍ତ୍ତମାନ,
ମହାଜନେ କରିଛନ୍ତି ଚାଉଳ ଗୋଦାମ ।
ମୋଗଲଙ୍କ ଆକ୍ରମଣୁ ରକ୍ଷାର କାରଣ,
ଆଫଗାନମାନେ କଲେ ଦୁରଗ ଗଠନ ।
ବିନାଶ ପାଇଛି ଗଡ଼ ନାହିଁ ନିଦର୍ଶନ,
ଖାଇ ପ୍ରାକାରାଦି ଚିହ୍ନ ସବୁ ବିମୋଚନ,
କେବଳ ବିରାଜେ ଏକ ମୃତ୍ତିକା ଭୂଧର,
ଯା'ପରେ ସ୍ଥାପିତ ଥିଲା ତୋପ ଭୟଙ୍କର ।
ମୋଗଲ ପଠାଣ ସେନା ନିର୍ଭୟ ଅନ୍ତର,
କରିଥିଲେ ଏହିଠାରେ ଯୁଦ୍ଧ ବହୁଥର ।

ଯୁଝିଲେ 'ସୋଜାତ' ଏଠା ସହ 'ଓସମାନ'
ହାରିଲେ ମୋଗଲ ରଣେ ଜିଣିଲେ ପଠାଣ ।
ମାନସିଂହ ଯୁଦ୍ଧ କଲେ ପଠାଣ ସହିତ,
ହିନ୍ଦୁ କରେ ପଠାଣଙ୍କ ଫଳ ବିପରୀତ । (୫୭)

ବୀରବର 'ମଲ୍ଲ' ଭୂପ ସଚିବ ପ୍ରଧାନ,
ପରାଭବି ଘୋର ଯୁଦ୍ଧେ ନୃପତି ପଠାଣ,
ଓଡ଼ିଶା ବିଜୟ କାର୍ଯ୍ୟ କରି ସମାପନ,
କଲେ ଭୂମି ବନ୍ଦୋବସ୍ତ କର ନିରୂପଣ ।
ରାଜନୀତି ଅନୁସରି ସୁବିଧା କାରଣ,
ଓଡ଼ିଶାକୁ ଦୁଇଖଣ୍ଡେ ବିଭାଗ ସାଧନ,
ପାର୍ବତ୍ୟ ପଶ୍ଚିମ ଅଂଶ ଗଡ଼ଜାତ ନାମ,
ଅର୍ଦ୍ଧ ସ୍ୱାଧୀନ କରଦ ନୃପତିଙ୍କ ଧାମ,
ସମଭୂମି ପୂର୍ବଅଂଶ ସମ୍ରାଟ ମୋଗଲ,
ମୋଗଲବନ୍ଦୀ ସ୍ୱରୂପେ ଖାସରେ ଦଖଲ ।
ମଲ୍ଲ ବନ୍ଦୋବସ୍ତ କାର୍ଯ୍ୟ କରି ସମାପନ,
ପାରିସି ଓଡ଼ିଆ ସ୍ଥାନେ କଲେ ପ୍ରଚଳନ,
'ବିଶି' 'ପରଗଣା' 'ଦଣ୍ଡପାଟ' 'ସରକାର'
'ଭୂଇମୂଳ' 'କାନନଗୋ' 'ଭୂୟାଁ' 'ଜମିଦାର'
ରାଜସ୍ୱ ସଂଗ୍ରହ ହେତୁ ବିଚାରି ବିହିତ,
ଉପଯୁକ୍ତ କର୍ମଚାରୀ କଲେ ନିଯୋଜିତ । (୫୮)

ଏହିକାଳେ ରାମଚନ୍ଦ୍ର ରାୟ ମହାଶୟ,
'ଓହେବାର' ପଦ ଲଭି ହେଲେକ ଉଦୟ ।
ଜଳେଶ୍ୱରେ ନିଜ ବାସ କଲେକ ସ୍ଥାପନ,
ବସାଇଲେ ଆଣି ତଥା କାୟସ୍ଥ ବ୍ରାହ୍ମଣ ।
ମାନସିଂହ ଓଡ଼ିଶାକୁ କରି ଆଗମନ,
ଟୋଡ଼ରଙ୍କ ବନ୍ଦୋବସ୍ତ କଲେ ସମର୍ଥନ,

କର ସଂଗ୍ରହ ସୁବିଧା, ପ୍ରେରଣ ସକାଶ,
ସଦର କାନନ୍‌ଗୋ ପଦ କଲେକ ପ୍ରକାଶ,
ଓହେଦାର ରାମଚନ୍ଦ୍ର ଅତି ଭାଗ୍ୟବାନ,
ପ୍ରଥମେ ନୂତନ ପଦେ କଲେ ଅଧିଷ୍ଠାନ । (୫୯)

ରାମଚନ୍ଦ୍ର କରୁଥିଲେ ଶକ୍ତି ଉପାସନା,
ବୈଷ୍ଣବ ଧରମ ପ୍ରତି ସବିଶେଷ ଘୃଣା ।
ସେହିକାଳେ ନିତ୍ୟାନନ୍ଦ ବୈଷ୍ଣବ ପ୍ରଧାନ,
ଜଳେଶ୍ୱରେ ଆସି ପାଇଥିଲେ ଅପମାନ ।
ଯେଉଁଠାରେ ବସି ପ୍ରଭୁ ଲଭିଲେ ବିଶ୍ରାମ,
ଚଷି ପକାଇଲେ ତାହା ଶକ୍ତିଭକ୍ତ ରାମ । (୬୦)

ଯେକାଳେ ଚୈତନ୍ୟ ଦେବ ତେୟାଗି ସଂସାର,
ଦେଶେଦେଶେ ସତ୍ୟଧର୍ମ କଲେକ ପ୍ରଚାର,
ଓଡ଼ିଶାରେ ସତ୍ୟଧର୍ମ ପ୍ରଚାର କାରଣ,
ଜଳେଶ୍ୱର ଠାରେ ଆସି ଦେଲେ ଦରଶନ,
ସିନାନ ସାରିଣ ପ୍ରଭୁ ବୈଷ୍ଣବ ସକଳ,
ସୁବର୍ଣ୍ଣରେଖା ଜୀବନେ ପରମ ନିର୍ମଳ,
ସ୍ନାନ ଅନ୍ତେ ସ୍ୱର୍ଣ୍ଣରେଖା ନଦୀ ଧନ୍ୟ କରି,
ପ୍ରବେଶିଲେ ଜଳେଶ୍ୱର ଶ୍ରୀହରି ସୁମରି,
ପରିଶ୍ରାନ୍ତ ଗୋରାଚାନ୍ଦ ହୋଇଣ କାତର,
ଉପନୀତ ସଂଗୀସହ ଗ୍ରାମର ଭିତର,
ଜଳେଶ୍ୱର ନାଥ ଶିବେ କରି ଦରଶନ,
ରେମୁଣା ଉଦ୍ଦେଶ୍ୟେ ପ୍ରଭୁ କଲେକ ଗମନ । (୬୧)

ନିକଟରେ ତୁଡ଼୍‌କିୟା ଗ୍ରାମ ଅକିଞ୍ଚନ,
ମୋଗଲ ପଠାଣ ଯହିଁ ସଂଗ୍ରାମ ଭୀଷଣ,
ବୀରେନ୍ଦ୍ର ଟୋଡରମଲ୍ଲ ସେନାନୀ ମୋଗଲ,
କଷିଥିଲେ ଏହିଠାରେ ପଠାଣଙ୍କ ବଳ,

ଦୁର୍ଦ୍ଧର୍ଷ ଦାଉଦ ଶେଷ ପଠାଣ ରାଜନ,
ସମ୍ମୁଖ ସମରେ ପଡ଼ି ତ୍ୟଜିଲେ ଜୀବନ ।

ତାହାର ପୂରବ ଭାଗେ 'ନାପୋ' ପଲ୍ଲୀଗ୍ରାମ,
ଢାଲିୟ ଚନ୍ଦ୍ରଶେଖର ଚୌଧୁରୀଙ୍କ ଧାମ,
ଢାଲ ତରବାରି ସହ ଚନ୍ଦ୍ର ବୀରବର,
ମୋଗଲମାରି ସଂଗ୍ରାମେ ମଲ୍ଲ ସହଚର,
ବିକ୍ରମେ ବିମୋହି ମଲ୍ଲେ ଢାଲିୟ ପଦବୀ-
ସହ ଭୂମି, ତାଙ୍କ ବଂଶ ଭୁଞ୍ଜନ୍ତି ଅବଧି । (୬୨)

ଉତ୍ତରେ 'ମୋଗଲମାରି' ମହା ଯୁଦ୍ଧସ୍ଥାନ,
ଯୁଝିଲେ ବଂଗଳା ଲାଗି ମୋଗଲ ପଠାଣ,
'ଖା ଖାଲମ' ଭୂମିଶାୟୀ ସମର ପ୍ରାଙ୍ଗନେ,
'ମୁନିମ'ଙ୍କ ଅଶ୍ୱବର ରତ ପଳାୟନେ,
ଭଗ୍ନପ୍ରାୟ ସୈନ୍ୟଗଣ କରି ଦରଶନ,
ସେନାନୀ 'ଟୋଡର' କହେ ଉତ୍ସାହ ବଚନ ।
ବାକ୍ୟଶୁଣି ସେନାଗଣ ମନେ ପାଇ ବଳ,
ଫେରିଲେ ନବ ଉଦ୍ୟମେ ଯଥା ଚାରିଦଳ,
ସମ୍ଭାବିତ ବିଜୟରେ ଉତ୍ସାହିତ ମନ,
ଭାଳୁଥିଲେ ଶତ୍ରୁଙ୍କର ଆଶୁ ପଳାୟନ,
ଆକ୍ରମ ଅକୁତଭୟେ ବିପକ୍ଷ କଟକ,
ଲାଗିଲା ଏ ଭାବ ଦେଖି ଶତ୍ରୁଙ୍କୁ ଚମକ,
ତୁମୁଳ ସଂଗ୍ରାମେ ପୁଣି ମତ୍ତ ଦୁଇଦଳ,
ନରରକ୍ତେ କର୍ଦ୍ଦମାକ୍ତ ହେଲା ରଣସ୍ଥଳ,
ଜିଣିଲେ ମୋଗଲସେନା ରକ୍ଷିଲେ ସମ୍ମାନ,
ରଣାନ୍ତେ ଦାଉଦ କଲେ କଟକେ ପ୍ରସ୍ଥାନ । (୬୩)

ଅଛଇ ଲକ୍ଷଣନାଥ ନିକଟେ ତାହାର,
ମହାଶୟ ବଂଶଧର ନିବାସୀ ଯାହାର,

ସେନାଙ୍କ ରସଦ ଭୟେ ମହାଶୟଗଣ,
ଜଳେଶ୍ୱର ଛାଡ଼ି ଏଠା କଲେ ଆଗମନ,
ତାଙ୍କ ସହିତରେ ଯେତେ କାୟସ୍ଥ ବ୍ରାହ୍ମଣ,
ସେହିଠାରେ ଯାଇ କଲେ ବାସ ନିରୂପଣ । (୬୪)
ଅଦୂରେ ଦିଶୁଛି ଦେଖ ପ୍ରକାଣ୍ଡ ଆଳୟ,
କରନ୍ତି ନିବାସ ଯହିଁ ରାୟ ମହାଶୟ,
ବିରାଜଇ ଦଲାନରେ ଦେବୀ ଦଶଭୁଜା,
ପଟ୍ଟବାସାବୃତ ବିପ୍ର କରୁଛନ୍ତି ପୂଜା ।
ଶିରୋପରେ ଚନ୍ଦ୍ରାତପ ଶୋଭା ମନୋହର,
ଜଳୁଅଛି ଝାଡ଼ବୃନ୍ଦେ ବତି ପରିକର,
ଚୌଦିଗେ ଦେବାଲଗିରି ପାଉଅଛି ଶୋଭା,
ଅଙ୍ଗନେ ଗାଲିଚା ବିଛା ଅତି ମନୋଲୋଭା ।
ଦର୍ଶକମଣ୍ଡଳୀ ପୂର୍ଣ୍ଣ ବୃହତ ପ୍ରାଙ୍ଗନ,
ଶୁଣି ଗୀତ, ଦେଖି ନୃତ୍ୟ ଆନନ୍ଦିତ ମନ,
ନାଟ୍ୟକାର ଗାଉଛନ୍ତି ଗୀତ ନାନା ଛାନ୍ଦେ,
ଉପସ୍ଥିତ ଜନଗଣ ଶୁଣନ୍ତି ଆନନ୍ଦେ,
ମଧ୍ୟେମଧ୍ୟେ ବାହାବାହା ଉଠୁଅଛି ଧ୍ୱନି,
ଶୁଣି ଉତ୍ସାହିତ ନଟୀ ନଟ ଭାଗ୍ୟ ମଣି ।
ବାଜୁଛି ମଂଗଳବାଦ୍ୟ ରାୟଙ୍କ ନଅରେ,
କରି ମନ ବିମୋହିତ ସୁମଧୁର ସ୍ୱରେ ।
ସ୍ଥାନାନ୍ତରେ ଭୋଜିର ଭୂରି ଆୟୋଜନ,
ଭୁଞ୍ଜନ୍ତି କୁଟୁମ୍ବ ଜ୍ଞାତି ଆଦି ନାନା ଜନ ।
ଉପସ୍ଥିତ ସନ୍ଧିକ୍ଷଣ ବଳିଦାନ କାଳ,
ବନ୍ଦହେଲା ନୃତ୍ୟଗୀତ, ବାଜିଲା କଂସାଳ,
ଘଡ଼ି, ଘଣ୍ଟା, ଢାକ, ଢୋଲ ଧରି ରୁଦ୍ରତାନ,
ଧୂପ, ଝୁଣା, ଧୂମେପୂର୍ଣ୍ଣ ପୂଜାର ଦଲାନ ।

ଶତଶତ ଛାଗ, ମେଷ, ମହିଷ ଭୀଷଣ,
ପରିପୂର୍ଣ୍ଣ କଲା ଦେଖ ପୂଜାର ପ୍ରାଙ୍ଗଣ,
ସାକ୍ଷାତ କାଳାନ୍ତକ ମୂର୍ତ୍ତି ଘାତକ ନିଷ୍ଠୁର,
ଲୋହିତ ଚନ୍ଦନ ଅଂଗେ ଲଲାଟେ ସିନ୍ଦୂର,
କରେ ଖଡ୍ଗ ତୀକ୍ଷ୍ଣଧାର ବଦନ ଗମ୍ଭୀର,
ଆସି ଉପନୀତ ତଥା ଗତି ଅତି ଧୀର,
ପୂଜା ହେଲା ହାଡ଼ିକାଠ, ପଡ଼େ ବଳିଦାନ,
ପରିଣତ ଦେବାଙ୍ଗନ ଭୀଷଣ ଶ୍ମଶାନ,
ଅବିରତ ଚାଲେ ବଳି ନହୁଏ ବିରାମ,
ଯାବତ୍ ନବମୀର ପୂଜା ନୋହେ ସମାଧାନ । (୬୫)

କିଛିଦୂରେ ଅବସ୍ଥିତ ବିରାଟ ଆଳୟ,
ଯେଉଁଠାରେ ପାଇଥିଲେ ପାଣ୍ଡବେ ଆଶ୍ରୟ ।
ଦକ୍ଷିଣ ଗୋ-ଗୃହ ଏବେ ହୋଇଛି ବିଲୋପ,
ତାହାସ୍ଥାନେ ବିରାଜିତ ଗଣ୍ଡ ଗ୍ରାମ 'ଗୋପ',
ନିବାସ କରନ୍ତି ଯହିଁ ରାଜୁ ଅଗଣିତ,
କୃଷିକାର୍ଯ୍ୟେ ରତ ସଦା ସୁଖେ ଅବସ୍ଥିତ । (୬୬)
'ଗୋବର ଘାଉଟା' ଗ୍ରାମ ତାହାର ଉତ୍ତର,
ଗୋଶାଳା ଗୋମୟ ସ୍ଥାନ ଖ୍ୟାତ ଚରାଚର ।
ଲୋକାଳୟ ପରିପୂର୍ଣ୍ଣ ଏବେ ସେହି ସ୍ଥାନ,
ବହୁ ବ୍ରାହ୍ମଣଙ୍କ ବାସ ସହ ଯଜମାନ । (୬୭)
ବିରାଜେ ନିକଟେ ତାର ସରସୀ 'ବିରାଟ'
ପିଉଥିଲେ ପାଣି ଯହିଁ ଗୋଷ୍ଠ ଗୋରୁ ଥାଟ ।
ଆକାରେ ବିରାଟ ସର ଦର୍ଶନ ଭୀଷଣ,
ସୁଗଭୀର ଦେହ ତାର ନିର୍ମଳ ଜୀବନ ।
ବଡ଼ବଡ଼ ମାଛ କେତେ କରେ ସନ୍ତରଣ,
ଦେବ ଭୟେ କେହି ନାହିଁ ଧରେ କଦାଚନ । (୬୮)

ତଦୁତ୍ତରେ ଅବସ୍ଥିତ 'ସରସଙ୍ଗ' ସର,
ଖୋଳାଇଲେ ସଙ୍ଗ ଜ୍ୟେଷ୍ଠ ବିରାଟ କୁମର ।
ସୁବିଶାଳ ଜଳାଶୟ କାର୍ଯ୍ୟ ଲୋକାତୀତ,
ଏକ ପାର୍ଶ୍ୱୁ ଅନ୍ୟପାର୍ଶ୍ୱ ଦୃଷ୍ଟିର ଅତୀତ ।
ପୋତି ଯାଇଥିଲା ସର କାଳ ସହକାରେ
ଖୋଳାହେଲା ଦୈବ ବଳେ ଈଶ୍ୱର କୃପାରେ । (୬୯)

ମେଦିନୀପୁର ନଗରେ ଗୋଗୃହ ଉତ୍ତର,
ଯେଉଁଠାରେ ଶୋଭେ ଏବେ ହର୍ମ୍ୟ ମନୋହର । (୭୦)

ଗୋଗୃହ ଦ୍ୱୟର ମଧ୍ୟେ ପଶ୍ଚିମ ଦିଗରେ,
ରାଜେ ପୁରାତନ ଗଡ଼ ବିରାଟ ନାମରେ,
ସଦର ଅନ୍ଦର ଦୁଇ ଗଡ଼ ପୁରାତନ,
ପୁରାକାଳେ ହିନ୍ଦୁ ରାଜା କଲେ ବିରଚନ ।
ଦୁର୍ଗ ରକ୍ଷା କରୁଥିଲେ ବୀରେନ୍ଦ୍ର କୀଚକ,
ଗଜ, ଅଶ୍ୱ, ପଦାତିକ ସୈନ୍ୟର କଟକ ।
ବୀର ବୃକୋଦର ଯାଙ୍କୁ ଗନ୍ଧର୍ବ ବେଶରେ,
ପଠାଇଲେ କୃଷ୍ଣା ପାଇଁ ଯମରାଜ ଘରେ ।
ଯାହାଙ୍କ ମରଣ ବାର୍ତ୍ତା ପାଇ ଦୁର୍ଯ୍ୟୋଧନ,
ଆସିଥିଲେ ସୈନ୍ୟ ସହ ବାଞ୍ଛି ଗୋହରଣ ।
ମତ୍ସ୍ୟରାଜ ଆଦେଶରେ କୁମର ଉତ୍ତର,
ଯୁଝିବାକୁ ଗଲେ ସହ ପାର୍ଥ ବୀରବର,
ପରାଜିତ ହୋଇ ରଣେ କୌରବ ରାଜନ,
ପଳାଇଲେ ଲଜ୍ଜା ପାଇ ସହ ସୈନ୍ୟଗଣ । (୭୧)

ଏ ଗଡ଼େ କୀଚକେଶ୍ୱରୀ କରାଳ-ବଦନା,
ସେକାଳେ ବିରାଜୁଥିଲେ ବିଲୋଳ ରସନା,
ହୋଇଛି ମୟୂରଭଞ୍ଜ ଏବେ ପୀଠ ସ୍ଥାନ,
ଭଞ୍ଜରାଜ ଅଧିଷ୍ଠାତ୍ରୀ ଦେବତା ପ୍ରଧାନ । (୭୨)

ଚାରିକ୍ରୋଶ ବ୍ୟାପିଅଛି ପରିଧି ଦୁର୍ଗର,
ସୁଦୃଢ଼ ପ୍ରାକାର ତାର ଅତି ଉଚ୍ଚତର,
ଶିଳାମୟ ସୁପ୍ରଶସ୍ତ ଉନ୍ନତ ପ୍ରାଚୀର,
ଭ୍ରମଣେ ସମର୍ଥ ତିନି ଅଶ୍ୱାରୋହୀ ବୀର ।

ସୁବେଷ୍ଟିତ ଗଡ଼ଖାଇ ହୋଇ ଫେରାତିନ,
ସୁଗଭୀର ଥିଲା କାଳେ ଅଧୁନା ବିଲୀନ ।
ଦୁର୍ଗ ମଧ୍ୟେ ବିରାଜିତ ସର ଅଗଣନ,
ଚଉପାଶେ ଥିଲା ଯାର ସୈନ୍ୟ ନିକେତନ ।

ଅଦୂରେ ଧନ ଭଣ୍ଡାର ପୂର୍ବ ଧନାଗାର,
ବିରାଜେ ଗୁମୁଟି ଚାରି ସ୍ଥାନ ପହରାର,
ଉନ୍ନତ ପ୍ରସ୍ତର ସ୍ତୁପ ସେହି ନିକେତନ,
ବିଶାଳ ପାଷାଣ ଦ୍ୱାର ତାର ନିଦର୍ଶନ । (୭୩)
କାନ୍ଥଡ଼ା ସ୍ୱରୂପ ରାଜେ ରାଜ-ଦରବାର,
ନେତ୍ର-ତୃପ୍ତିକର ମାତ୍ର କାରୁକାର୍ଯ୍ୟ ତାର,
ବିସ୍ତୃତ ଦଲାଣ ମଧ୍ୟେ ଦ୍ୱିପାଖେ କୋଠରି,
ସମ୍ମୁଖେ ପ୍ରାଙ୍ଗଣ ତାର ଯାର ନାହିଁ ସରି ।
ଚାନ୍ଦର ଗଡ଼ର ଶୋଭା ଏବେ ଅନ୍ତର୍ଦ୍ଧାନ,
ପୂରବ ସମୃଦ୍ଧି ଚିହ୍ନ ମାତ୍ର ବର୍ତ୍ତମାନ,
ବହୁ ଭଗ୍ନ ଅଟ୍ଟାଳିକା ଗଡ଼ ଅଭ୍ୟନ୍ତରେ,
ସୁନ୍ଦର ସୁଦୃଶ୍ୟ ବପୁ ନିର୍ମିତ ପ୍ରସ୍ତରେ,
ନାହିଁ ସେ ପୂରବ ଶୋଭା ହୋଇଛି ବିଲୀନ,
ଭ୍ରମନ୍ତି ଭଲ୍ଲୁକ ବ୍ୟାଘ୍ର ସର୍ପ ନିଶିଦିନ,
କାଳର କରାଳ ଗ୍ରାସେ ପାଇଛି ବିଳୟ,
ସୁଦୃଢ଼ ପ୍ରାଚୀର ମାତ୍ର ଦିଏ ପରିଚୟ ।
ବିରାଟ ନୃପତି ବଂଶ ଲୁପ୍ତ ବହୁଦିନ
ହେଲା, ଗଡ଼ ପରେ ବନ ଭୂୟାଁଙ୍କ ଅଧୀନ ।

ଯେକାଳେ ଇଂରାଜ କଲେ ସ୍ୱରାଜ୍ୟ ବିସ୍ତାର,
ସେକାଳେ ଭୂୟାଁଙ୍କ ଥିଲା ଗଡ଼େ ଅଧିକାର,
ରାୟ ମହାଶୟ ବଂଶ ଇଂରାଜ ସହାୟ,
କରି ଭୂୟାଁ ବଂଶଧରେ ରଣେ ପରାଜୟ,
ସେ ସ୍ଥାନୁ ସବଂଶେ ତାଙ୍କୁ କରି ବିତାଡ଼ିତ,
କଲେକ ରାୟବଣିଆ ଗଡ଼େ ଅଭିହିତ,
ଯେ ନାମେ ଅବଧି ଗଡ଼ ଲୋକରେ ବିଦିତ,
ଇଂରେଜ ଅଧୀନେ ଥାଇ ହେଉଛି ଶାସିତ ।
ଯେଉଁ ପରଗନା ମଧ୍ୟେ ଗଡ଼ ଅବସ୍ଥିତ,
ଫତେୟାବାଦ ନାମରେ ତାହା ପ୍ରକାଶିତ ।
ଅରଣ୍ୟରେ ପୂର୍ଣ୍ଣଥିଲା ଗଡ଼ ଅଭ୍ୟନ୍ତର,
ଏବେ ପୂର୍ଣ୍ଣ ତାହା ଶସ୍ୟେ ଶ୍ୟାମଳ ସୁନ୍ଦର । (୭୪)

ଏ ଗଡ଼ ଦକ୍ଷିଣେ ସ୍ଥିତ ବିରାଟ ନଗର,
କପଟିପଦା ନାମରେ ଖ୍ୟାତ ଚରାଚର,
ବିଲୁପ୍ତ ସେ ଶମୀବୃକ୍ଷ ଶାଖାରେ ଯାହାର,
ରଖିଥିଲେ ଧନଞ୍ଜୟ ଯୁଦ୍ଧର ସମ୍ଭାର,
ସୁଦୀର୍ଘ ପ୍ରସ୍ତର ଖଣ୍ଡ ସ୍ଥିତ ଉଭା ଭାବେ,
ବିରାଜିତ ବର୍ତ୍ତମାନ ଶମୀବୃକ୍ଷ ଠାବେ,
ନୈସର୍ଗିକ ପ୍ରଭାବରେ ସ୍କନ୍ଧ ପାଦପର,
କାଳ ସହକାରେ ଏବେ ହୋଇଛି ପ୍ରସ୍ତର । (୭୫)

ଏହି ଦୁଇ ମଧ୍ୟସ୍ଥଳେ ମହେନ୍ଦ୍ର ପର୍ବତ,
ଯେଠାରେ ବୀରେନ୍ଦ୍ର ପାର୍ଥ କଲେ କାଳ ଗତ,
ଦ୍ୱାଦଶ ବରଷ ହୋଇ ଘରୁ ବିତାଡ଼ିତ,
ଯେକାଳେ ଭ୍ରମିଲେ ଦେଶେ ଦେଶେ ଦୁଃଖଚିତ୍ତ,
ଏହିଠାରେ 'ଉଲୁପୀର' ଦେଖି ଚନ୍ଦ୍ରାନନ,
ଶିରେ ବିଳମ୍ବିତ କେଶ ବାରିଦ-ବରଣ,

ମୁକୁଳିତ ଆଶାଲତା ଉଦିଲା ମନରେ,
ପ୍ରଣୟ-ଅଙ୍କୁର ଜାତ ହୃଦୟ-କନ୍ଦରେ,
ଅବଶେଷେ ବଦ୍ଧ ହୋଇ ବିବାହ-ବନ୍ଧନେ,
ଯାପିଲେ କେତେକ ବର୍ଷ ଆନନ୍ଦିତ ମନେ ।
ଦେଶର ଭିତର ତଥ୍ୟ ପାଇଲେ ସନ୍ଧାନ,
ଅଜ୍ଞାତବାସର ଯାହା ହୋଇଲା ନିଦାନ୍ । (୭୬)

ସ୍ୱର୍ଣ୍ଣରେଖା କୂଳେ ସ୍ଥିତ ପିପଳୀ ବନ୍ଦର,
କାଳେ ବିରାଜିଲା ଯହିଁ ବଜାର ସୁନ୍ଦର,
ଫିରଙ୍ଗୀ ବଣିକ ଏହା କଲେକ ସ୍ଥାପନ,
ନିର୍ମାଇଲେ କୋଠି ତଥା ବାଣିଜ୍ୟ କାରଣ ।
ସମ୍ରାଟ ଆଦେଶେ ପୁଣି ବଣିକ ଇଂରାଜ,
ପଶିଲେ ସେଠାରେ ଘେନି ବାଣିଜ୍ୟ ଜାହାଜ,
ଶୋଭିଲା ତଟିନୀ ବକ୍ଷେ ତରୀ ଶତଶତ,
ଲାଗିଥିଲା ତହୁଁ କ୍ରୟ ବିକ୍ରୟ ସତତ,
ନାହିଁ ସେ ବନ୍ଦର ଏବେ କମନୀୟ ସ୍ଥାନ,
ନିମଗ୍ନା ଗର୍ଭରେ କ୍ରମେ କରିଛି ପ୍ରସ୍ଥାନ । (୭୭)

ମଦ୍ୟପ ଶ୍ୱେତାଙ୍ଗ ଜାତି ମଦ୍ୟର କାରଣ,
ଆଣି ତଥା ବସାଇଲେ ଶୁଣ୍ଡି ଏକ ଜଣ,
ଶ୍ୱେତାଙ୍ଗ ପ୍ରସାଦେ ଶୁଣ୍ଡି ବଢ଼େ ଦିନୁଦିନ,
ବିଷୟୀ ଶୌଣ୍ଡିକ ମାତ୍ର ବନ୍ଦର ବିଲୀନ ।
ବନ୍ଦର ସହାୟେ ବିତ୍ତ କରି ଉପାର୍ଜନ,
କଲେକ 'ସାହାବନ୍ଦର' ଗ୍ରାମ ଏ ସ୍ଥାପନ,
ପରିବାର ସହ ସେଠା କଲେ ବସବାସ,
ଅଦ୍ୟାପି ବିରାଜେ ଗ୍ରାମ ସାହାଙ୍କ ଓୟାସ ।
ନଦୀ ଏକ କୂଳେ ସ୍ଥିତ ପିପଳୀ ବନ୍ଦର,
ଅପରେ ସାହାଙ୍କ କୃତ ଗ୍ରାମ ମନୋହର,

ସାହାଙ୍କ ସ୍ଥାପିତ ଗ୍ରାମ ବନ୍ଦର ସହାୟେ,
'ସାହାବନ୍ଦର' ନାମରେ ମିଳିତ ଉଭୟେ ।
ଚଞ୍ଚଳା ଅଚଳା ହେଲେ ସାହା ନିକେତନେ,
ସ୍ଥାପିଲେ ବିସ୍ତୀର୍ଣ୍ଣ ରାଜ୍ୟ ପୂର୍ଣ୍ଣ ଧନଜନେ,
ଭୂମି ଅଧିକାରୀ ତେଣୁ ଉପାଧି ଭୂଇଁୟା,
ରାୟ ଅର୍ଥେ ବଳଶାଳୀ ମହତପଣିଆ । (୭୮)

ସ୍ୱର୍ଣ୍ଣରେଖା ଅନ୍ୟ କୂଳେ ଜାମକୁଣ୍ଡା ଗ୍ରାମ,
ସ୍ଥାପୟିତା କରୁଥିଲେ ଅବଧାନୀ କାମ,
ବୋମ୍ବାଟିଆ ଅଧୀଶ୍ୱର ତାଙ୍କ ବଂଶଧର,
ଲୁଣ୍ଠନେ ଶ୍ୱେତାଙ୍ଗ ପୋତ ସଦା ତତପର ।
ସ୍ଥାପିଲେ ଭୁଷଣ୍ଡେଶ୍ୱର ସ୍ୱର୍ଣ୍ଣରେଖା ତଟେ,
ଅଦ୍ୟାପି ବିରାଜେ ଶିବ ସମୁଦ୍ର ନିକଟେ ।

ସମୀପରେ ରାଜେ ଏକ ବିସ୍ତୀର୍ଣ୍ଣ ପ୍ରାନ୍ତର,
ପୁରାକାଳେ ଚାଷ ଯହିଁ କଲେ ମହେଶ୍ୱର,
ଯେଉଁଠାରେ ଥିଲା ତାଙ୍କ ବିଶ୍ରାମର ସ୍ଥାନ,
ସେଠାରେ ଗାଁ-ଲୋକେ କରି ମନ୍ଦିର ନିର୍ମାଣ,
ସ୍ଥାପି ତହିଁ ଲିଙ୍ଗ ଏକ ମହାଦେବଙ୍କର,
ଦେଇଛନ୍ତି ନାମ ତାଙ୍କ ଲଙ୍ଗଳ-ଈଶ୍ୱର ।
ଲୋକେ ଧାନଚାଷ ଶିକ୍ଷା ଦେବାର କାରଣ,
ଶିବ କରିଥିଲେ ସେହି ପ୍ରାନ୍ତର କର୍ଷଣ,
କୁବେର ବିହନ ଦେଲେ, ହଳଧର ହଳ,
ଧର୍ମରାଜ ଲଙ୍ଗଳରେ ମହିଷ ଯୁଗଳ,
ତ୍ରିଶୂଳ ହେଲାକ ଫାଳ, କାର୍ତ୍ତିକେୟ ଚାଷୀ,
କାଟିଲେ ସେ ଧାନ ଭୀମ ହିଡ଼ମ୍ବା-ବିଳାସୀ ।
ଦେବତା ନାମରୁ ଜାତ ନାମ ପ୍ରଗଣାରେ,
'ଷୋଳସାପାଣ୍ଟି' ପ୍ରାନ୍ତର ଯହିଁରେ ପ୍ରଚାର ।

ପୂରବ ପଶ୍ଚିମ ଆଠ କୋଶ ସେ ପାଣ୍ଡୁର,
ଉତ୍ତର-ଦକ୍ଷିଣେ ଦୁଇ କୋଶ ପରିସର । (୭୯)

ତଟିନୀ ଅପର ତଟେ ରାଜେ ଭୋଗରାଇ,
ବାଲୁକା ଉପରେ ସ୍ଥିର ସୁବୃହତ ସାହି,
ପଟାସପୁର ଚୌଧୁରୀ ଜମିଦାର ତାର,
ସମସ୍ତ ପ୍ରଗଣା ଏବେ ତାଙ୍କ ଅଧିକାର ।
ସେଠା ଅଧିଷ୍ଠାତ୍ରୀ ଦେବୀ ବାସୁଳୀ ମୂରତି,
ଅଷ୍ଟଭୁଜା, ପୀତବର୍ଣ୍ଣା, ଭୟଙ୍କରା ଅତି ।
ଶକ୍ତିଭକ୍ତ 'ଦେବ ଗିରି' ଗଢ଼ିଲେ ମନ୍ଦିର,
ଭକତି ସହିତ ସେବା ସ୍ଥାପିଲେ ଶକ୍ତିର,
ସେବା ହେତୁ ଖଞ୍ଜିଦେଲେ ଭୂମି ସୁପ୍ରସର,
ଅଦ୍ୟାପି ଭୁଞ୍ଜନ୍ତି ଭୂମି ସେବକ ନିକର । (୮୦)

ବୀର 'ମକୁଭୂଇଁ' ବାସୁଦେବପୁର ପତି,
ତାହାଙ୍କ ଅନୁଜ 'ଛକୁ' ସମାନ ଶକତି,
ନିଯୁକ୍ତ ପ୍ରହରୀ କାର୍ଯ୍ୟେ ବିମଳା ମନ୍ଦିରେ,
ସତତ ରକ୍ଷିଲେ ଦ୍ୱାର ବିହିତ ବିଧିରେ ।
ଉପସ୍ଥିତ ମହାଯୋଗ ଅଷ୍ଟମୀ ବାସରେ,
ସନ୍ଧିକ୍ଷଣେ କଲେ ପୂଜା ନିଶା ଦ୍ୱିପ୍ରହରେ,
ଯଥାବିଧି ପୂଜାସାରି ଭୂଇଁ ଦୁଇ ଭାଇ,
ବିମଳାଙ୍କ ପାଦପଦ୍ମ ରହିଲେ ଅନାଇ,
ପୂଜାପାଇ ମହା ତୁଷ୍ଟ ଭୈରବ-ଘରଣୀ,
ବରଦେଲେ ଭାଇ ଦୁହେଁ ପ୍ରଫୁଲ୍ଲ ଆନନୀ,
"ମନ୍ଦିର ଭିତରେ ଅଛି ଅସି ତୀକ୍ଷ୍ଣଧାର,
ତାହା ନେଇଯାଅ ଦୁହେଁ ବୈତରଣୀ ପାର,
ଧର୍ମପଥେ ରଖି ମନ ତରବାରି ବଳେ
ସ୍ଥାପ ଯାଇ ରାଜପୀଠ ବୁଦ୍ଧିର କୌଶଳେ ।"

ସେହି ଆଶୀର୍ବାଦ ବଳେ ଦୁହେଁ ବଳୀୟାନ,
ରାଜ୍ୟ ଅଧିକାର ଆଶେ ହେଲେ ଆଗୁଆନ ।
ବଡ଼ଭାଇ ରହିଗଲେ ମତାଇ କୂଳରେ,
ବିସ୍ତାରିଲେ ନିଜ ରାଜ୍ୟ କୃପାଣ ବଳରେ ।
ସାନଭାଇ ଚାଲିଗଲେ ସ୍ୱର୍ଣ୍ଣରେଖା ପାରେ,
ମନ ବଳାଇଲେ ତଥା ରାଜ୍ୟ ଅଧିକାରେ ।
କଂସାବତୀ, ସ୍ୱର୍ଣ୍ଣରେଖା ତଟିନୀ ଯୁଗଳ,
ସୀମାବଦ୍ଧ କଲା ତାଙ୍କ ଶକତି ପ୍ରବଳ ।
ଉତ୍ତର ଦକ୍ଷିଣ ବାନ୍ଧି ପୂରବେ ସାଗର
ଅସୀମ, ଅନନ୍ତ ଯାର ଶରୀର ପ୍ରସର ।
ଗୁମାଇ ମତାଇ ନଦୀ ଯୁଗ ଯେ ପ୍ରକାର,
ସସୀମ କଲାକ ରାଜ୍ୟ ତାହାଙ୍କ ଭ୍ରାତାର ।
ତାଙ୍କ ବଂଶଧର ମଧ୍ୟେ କିଶୋରୀନନ୍ଦନ
ଲଭିଲେ ଅଶେଷ କୀର୍ତ୍ତି ସ୍ୱକାର୍ଯ୍ୟ ସାଧନ ।
ଅପୁତ୍ରିକ ହେତୁ ମାତ୍ର ସଦା ଦୁଃଖ ମନ,
ଭବତାରଣ ପିଣ୍ଡାର୍ଥେ ପୁତ୍ର ପ୍ରୟୋଜନ ।
ଦିନକରେ ଯାଉଥିଲେ ଯାନ ଆରୋହଣେ,
ଦେଖିଲେ ବାଳକ ଏକ ନିଯୁକ୍ତ ଖନନେ -
ସୁବିଶାଳ ଗର୍ତ୍ତ ଏକ ପଥ ମଧ୍ୟସ୍ଥଳେ,
ପଥିକ ବିପଦ ଇଚ୍ଛା ମାନସ-ମଣ୍ଡଳେ ।
ତା ଦେଖି ବାହକଗଣ ଆପତ୍ତି ତୋଳିଲେ,
ତା ଶୁଣି 'କିଶୋରୀ' କ୍ରୋଧେ ବାଳକେ ପୁଛିଲେ,
ଖନକ ଗୋପେନ୍ଦ୍ର ଧୀରେ କଲେକ ଉତ୍ତର,
ବାଟଚାହିଁ ଚାଲିଯିବ ତୁମେ ଏକଥର,
ପଡ଼ିବୁ ଗାତରେ ଆମ୍ଭେ ଖେଳୁ ନିରନ୍ତର,
ତେଣୁ ଗାତ ନୁହେଁ ଆମ୍ଭ ପକ୍ଷେ ହିତକର ।

ବାଳକର ବୁଦ୍ଧି ଶୁଣି 'କିଶୋରୀ ନନ୍ଦନ',
ପଚାରିଲେ ପରିଚୟ ବାଳକେ ତତ୍‌କ୍ଷଣେ
ବାଇନ ପଟ୍ଟନାୟକ ଜନକ ତାହାର,
ନୟାଗାଁ ପଲ୍ଲୀରେ ଘର ଦୁଃଖର ସଂସାର,
ଏହିରୂପ ବାଳକର ପାଇ ପରିଚୟ,
କିଶୋରୀନନ୍ଦନ ଅତି ପ୍ରଫୁଲ୍ଲ ହୃଦୟ,
ବାଇନ ସମ୍ମତି ନେଇ ଚୌଧୁରୀ ପ୍ରବର,
ଗୋପେନ୍ଦ୍ରେ କଲେକ ସୁଖେ ଦତ୍ତକ କୁମର । (୮୧)

ଅଦୂରେ ବିରାଜେ ତାର ଭୀଷଣ କାନନ,
ସେକାଳେ ସେଠାରେ ଥିଲା କରାତି ଭବନ,
ବହୁ ସୂତ୍ରଧର ତଥା କରୁଥିଲେ ବାସ,
ବାଣିଜ୍ୟ-ବୋଇତ ଆଦି ନିର୍ମାଣ ସକାଶ,
ନାମମାତ୍ର ଅଛି ଏବେ କରାତିର ଶାଳ
ଜନଶୂନ୍ୟ, ବସେ ତହିଁ ଶାର୍ଦ୍ଦୁଳ ଶୃଗାଳ । (୮୨)

ତାହାପରେ ଦେହୁଡ଼ଦା ମଧ୍ୟଭଳି ଗ୍ରାମ,
ପରିଷ୍କାର ପରିଚ୍ଛନ୍ନ ମହାଶୟ ଧାମ,
ପରମ ଧାର୍ମିକବର ଏଠା ମହାଶୟ,
ନାମରେ କୈଳାଶଚନ୍ଦ୍ର କୋମଳ ହୃଦୟ,
ଜିତେନ୍ଦ୍ରିୟ ବିଜ୍ଞତମ ବିଶୁଦ୍ଧ ବିଶେଷ,
ରସନାରେ ବିରାଜିତ ଧର୍ମ ଉପଦେଶ ।

ବୀରକୂଳ ଦେହୁଡ଼ଦା ସନ୍ନିକଟ ଗ୍ରାମ,
ନିଦାଘରେ 'ହେଷ୍ଟିଂସ'ଙ୍କ ବିଶ୍ରାମର ସ୍ଥାନ,
'ଓୟାରେନ' ଯେ କୋଠିରେ କରୁଥିଲେ ବାସ,
କାଳର କବଳେ ଏବେ ପାଇଛି ବିନାଶ । (୮୩)

'ଗଡ଼ମାନଧାତା' ତାର ଦକ୍ଷିଣେ ବିରାଜେ,
ପୁରାକାଳେ ବିଭୂଷିତା ଥିଲା ନାନା ସାଜେ,
ମଧ୍ୟସ୍ଥଳେ ରାଣୀହଂସ ସ୍ୱଚ୍ଛ ସରୋବର,
ପଥର ପାହୁଚମାନ ଗଠଣ ସୁନ୍ଦର,
ଘାଟୋପରେ ଶୋଭାପାଏ ଯୁବତୀ ମୂରତି,
ଖଡ୍ଗହସ୍ତା, ତେଜସ୍ୱିନୀ, ବୁଦ୍ଧିମତୀ ସତୀ,
ଶତ୍ରୁ କରୁଁ ଗଡ଼ରକ୍ଷା କରିବା କାରଣେ,
ପାଷାଣ ମୂରତି ରୂପେ ପୂଜିତା ଯତନେ ।
ଗଡ଼ ଅଧିକାରୀ ବଂଶ ଛାଡ଼ି ଦୁର୍ଗବରେ,
କରୁଛନ୍ତି ବାସ ଏବେ ଇଡ଼ଦା ଗ୍ରାମରେ,
କି କାରଣେ, କେଉଁକାଳେ, ଛାଡ଼ିଲେ ସେ ସ୍ଥାନ,
ଏ କାଳେ ତାହାର କିଛି ନମିଳେ ସନ୍ଧାନ ।
ପୂର୍ବପଦ ସହ ଏବେ ଯୁକ୍ତ ପହରାଜ,
ମୟୂରଭଞ୍ଜ ସିଂହାସନେ କରିଣ ବିରାଜ ।
ପୂରବ ଦୁରଗ ଏବେ ଅରଣ୍ୟେ ଆବୃତ,
ହୋଇଛି ଲକ୍ଷଣମାନ କାଳେ ଅପହୃତ । (୮୪)

ବାଲେଶ୍ୱର ଉପକୂଳ ସରଳ ସୁନ୍ଦର,
କୂଳରୁ ସାଗର ଦୃଶ୍ୟ ଅତି ମନୋହର ।
ସ୍ଥାନେସ୍ଥାନେ ବାଲୁକାର ସ୍ତୂପ ବିଦ୍ୟମାନ,
ନିବାରେ ଯହିଁରେ ସିନ୍ଧୁ ଉର୍ମି ଆଗୁଆନ ।
ଅନ୍ୟତ୍ରେ ହିନ୍ତାଳ, ବନି, ସୁନ୍ଦୁରି ଗହନ,
ପଟାହାଡ଼ିଆ ଶାର୍ଦ୍ଦୂଳ ନିତ୍ୟ ନିକେତନ,
ତାହାପରେ ତୃଣାବୃତ ଶ୍ୟାମଳ ପ୍ରାନ୍ତର,
ବିସ୍ତାରିତ ରହିଅଛି ଗ୍ରାମର ଭିତର ।
ପୂର୍ବେ ହେଉଥିଲା ଏଠା ନିମକ ପୋକ୍ତାନ,
ଏକାଳେ ଗୋ-ମହିଷର ବିଚରଣ ସ୍ଥାନ ।

ଚୁହ୍ଲିୟା, ମଳଙ୍ଗୀ ଆଉ ପ୍ୟାଦା, ଜମାଦାର,
ଦାରୋଗା, ମହୁରୀ ଆଦି କେତେ କର୍ମକାର;
ଶୀତ, ଗ୍ରୀଷ୍ମ କାଳେ ଏଠା କରୁଥିଲେ ବାସ,
କୁଟୀର ନିର୍ମାଣ କରି ପୋକ୍ତାନ ସକାଶ ।
ସିନ୍ଧୁଜଳ ମାଟିସହ କରି ସମ୍ମିଳିତ,
ବେଣା ଆଦି ଘାସୁ କରି ବହ୍ନି ପ୍ରଜ୍ୱଳିତ,
ମାରୁଥିଲେ କୁଣ୍ଡିୟାରେ ପଅଙ୍ଗା ଲବଣ,
ଯାହା ବହି ବଢ଼ିଥିଲେ ଏଠା ମହାଜନ ।
ଆଗେ ରାଜା କରୁଥିଲେ ଲବଣ ବ୍ୟାପାର,
ତାହାପରେ ଦେଶୀ ଲୋକେ କଲେ କାରବାର ।
ଯାଇଛି ସେକାଳ ଏବେ ବିଲାତି ଲବଣ,
କରୁଅଛି ଆଜିକାଲି ଅଭାବ ମୋଚନ ।
ଆସୁଛି ଶ୍ୱେତଦୀପର ଶ୍ୱେତାଙ୍ଗ ଲବଣ,
କୃଷ୍ଣକାୟ ଲବଣର ନାହିଁ ଆକିଞ୍ଚନ । (୮୫)

ବାଲେଶ୍ୱର ପଶ୍ଚିମରେ ତିନି ନୃପବର,
ମୟୂରଭଞ୍ଜ, ନୀଳଗିରି ପୁଣି କେଉଁଝର ।
ଭଞ୍ଜରାଜ ଓଡ଼ିଶାର ନୃପତି ପ୍ରଧାନ,
ପୁରାକାଳୁ ଖ୍ୟାତ, କେହି ନୋହେ ଏ ସମାନ ।
ଅତୁଳ କ୍ଷମତାଶାଳୀ ରାଜ୍ୟ ପ୍ରସାରିତ,
ଅନେକ ଭୂପତି ଥିଲେ ଭଞ୍ଜଙ୍କ ଆଶ୍ରିତ,
ପାଲ'ହଡ଼ା, ଦଶପଲ୍ଲା, ବୌଧ, ଘୁମସର,
ଅଧୀନରେ ଥିଲେ କାଳେ ଭଞ୍ଜ ଅଧିପର ।
ଜୟପୁର ବଂଶଧର ଏକ ବୀରବର,
ସ୍ଥାପିଥିଲେ ବାହୁବଳେ ରାଜ୍ୟ ସୁପ୍ରସର ।
ପ୍ରବାଦ ମୟୂରଡିମ୍ବୁଁ ଜାତ ରାଜଗଣ
ତେଣୁ ଏହି ରାଜ୍ୟେ ଶିଖୀ ବିନାଶ ବାରଣ ।

ଦ୍ୱାପରେ ବିରାଟ ଏଠା କଲେ ରାଜପଣ,
ଅସୀମ ପ୍ରତାପେ ରାଜ୍ୟ କଲେକ ଶାସନ ।
ଚିରସ୍ଥାୟୀ ନୁହେ କିଛି ଏ ମହୀ ମଣ୍ଡଳେ,
ବିଲୁପ୍ତ ବିରାଟ ବଂଶ ନିୟତିର ବଳେ ।(୮୬)

ନୀଳଗିରି କ୍ଷୁଦ୍ର ରାଜ୍ୟ ଅତି ଅପ୍ରସର,
ସ୍ଥାପିଥିଲେ ନାଗପୁର ରାଜବଂଶଧର ।
ଛୋଟ ନାଗପୁର ପତି କନିଷ୍ଠ କୁମର,
ରାଜ୍ୟୁ ବିତାଡ଼ିତ ହୋଇ ଗଲେ ଦେଶାନ୍ତର,
କ୍ରମେ ପ୍ରବେଶିଲେ ଯାଇ ପୂତ ନୀଳାଚଳେ,
ବସିଲେ ସନ୍ନ୍ୟାସୀ ବେଶେ ବଡ଼ଛତା ତଳେ ।
ବିମଳ ଉଜ୍ଜ୍ୱଳ କାନ୍ତି, ଲାବଣ୍ୟ ମାଧୁରୀ,
ଅମାନୁଷୀ ସୁରଶୋଭା ସର୍ବ ଅଙ୍ଗ ପୂରି,
ଯୌବନ ବିକାଶ ହେତୁ ପୂର୍ଣ୍ଣ କଳେବର,
ସ୍ୱର୍ଗ ଛାଡ଼ି ଭୂମେ ଉଦେ ଏ କାର୍ତ୍ତିକେଶ୍ୱର ।
ସଦା ମୁଖେ ବେଦପାଠ ସଙ୍ଗୀତ ସୁନ୍ଦର,
ଦେବତା ଗନ୍ଧର୍ବ ଜିଣି ସୁମଧୁର ସ୍ୱର ।
ପ୍ରତାପରୁଦ୍ରଙ୍କ ସୁତା କରଳାକୁମାରୀ,
ଦେବ ଦରଶନେ ଯାନ୍ତି ନିତ୍ୟ ସ୍ନାନ ସାରି,
ପ୍ରତ୍ୟହ ଭେଟନ୍ତି ବାଟେ ସନ୍ନ୍ୟାସୀ ପ୍ରବରେ,
ଗାଉଥାନ୍ତି ଦେବଗୀତ ସୁମଧୁର ସ୍ୱରେ ।
ଦେଖି ରୂପ, ଶୁଣି ସ୍ୱର କୁମାରୀର ମନ,
ରହିଲା ସନ୍ନ୍ୟାସୀ ପାଶେ ସଦା ଉଚ୍ଚାଟନ ।
ପରସ୍ପର ଶୁଭଦୃଷ୍ଟି ହେଲା ବିନିମୟ,
ବିକାଶେ କୁମୁଦ-କାନ୍ତି ହେଲେ ଚନ୍ଦ୍ରୋଦୟ,
ଦୁହିଁଙ୍କର ମନେ ଜାତ ଅଙ୍କୁର ପ୍ରେମର,
ହୃଦରେ ମିଳନ ଇଚ୍ଛା କ୍ରମେ ଗୂଢ଼ତର,

ଦିନୁଦିନ ବାଳା କ୍ଷୀଣ, ସୌନ୍ଦର୍ଯ୍ୟ ମଳିନ,
ପ୍ରଦୋଷେ କମଳଦଳ ଯଥା ଶୋଭାହୀନ ।
ଏକଥା ପ୍ରତାପ କର୍ଣ୍ଣେ ହେଲାକ ଗୋଚର,
ସନ୍ଧାନେ ଜାଣିଲେ କିଏ କନ୍ୟା-ମନଚୋର,
ଛୋଟନାଗପୁର- ସୁତ ପାଇ ପରିଚୟ,
ମନାନନ୍ଦେ ସୁତା ସହ ଦେଲେ ପରିଣୟ ।
ନୀଳଗିରି ରାଜ୍ୟେ କଲେ ଯୌତୁକ ପ୍ରଦାନ,
ଅବଧି ଭୁଞ୍ଜନ୍ତି ରାଜ୍ୟ ବଂଶଧରମାନ ।
ଅବଧି 'କରଲା' ନାମ ସ୍ମରଣ କାରଣ,
ପ୍ରଚଳ କରଲାଫୁଲ ସନ୍ତକ ଲିଖନ ।(୮୭)

ଭଞ୍ଜରାଜ ବଂଶଧର କେଉଁଝର ଭୂପ,
ଆସିଲେ ରାଜ୍ୟ ଶାସନେ ଭଞ୍ଜଙ୍କ ସ୍ୱରୂପ,
ସୁବିଚାର ଅଭିଳାଷେ ଯେବେ ପ୍ରଜାଗଣ
ଗୁହାରି ରାଜାଙ୍କ ଠାରେ ମିଳି ସର୍ବଜନ ।
କାଳେ ପ୍ରତିନିଧି ଭାବ ହେଲା ଅବସାନ,
ସ୍ୱାଧୀନ ନୃପତିରୂପେ ଶାସନ ବିଧାନ ।
ଦାମୋଦର ଭୂପ ଶେଷ ଭଞ୍ଜ ବଂଶଧର,
ଯାହାଙ୍କୁ ଇଂରେଜ ରାଜ କଲେ ସମାଦର । (୮୮)

ଏହି ରାଜଗଣ ରାଜ୍ୟେ ଅନେକ ଭୂଧର,
ଭିଡ଼ାଭିଡ଼ି ଲିପ୍ତ ଭାବେ ଦୃଶ୍ୟ ମନୋହର,
ସ୍ତରେସ୍ତରେ ଶୋଭାପାଏ ଗିରିମାଳାଚୟ,
ନଦନଦୀ, ହ୍ରଦ, ଉତ୍ସ, ସଲିଳ ନିଳୟ,
ବାଲେଶ୍ୱର ନୀର ପ୍ରୟୋଜନ ଅନୁସାରେ,
ଭୁରିଭୁରି ବାରିଭରା ଭୂଧର କନ୍ଦରେ ।

ସୁଶୀତଳ 'ମେଘାସନୀ' ଭୀମ ନଗବର,
ବିରାଜେ ମୟୂରଭଞ୍ଜେ ଶୋଭିତ ସୁନ୍ଦର,

ତୁଷାରମଣ୍ଡିତ ଗିରି-ଶିଖର ନିକର,
ଭେଦଇ ଉନ୍ନତ୍ତ ହୋଇ ଅମ୍ବୁଦ ଅମ୍ବର,
ଦୂରରୁ ନିରେଖି ତାର ପ୍ରବଳ ପ୍ରତାପ,
ସଭୟେ ମରିଚୀମାଳୀ ନବର୍ଷଇ ତାପ,
ସଦା ସେଠା ବିରାଜଇ ଶୀତ ସମୀରଣ,
ବାରମାସ ହିମଋତୁ କରେ ରାଜପଣ । (୮୯)

ସମୁନ୍ନତ 'ସୋନଚୂଟ' ନୀଳଗିରି ବକ୍ଷେ,
ଧରିଛି ଅପୂର୍ବ ଶୋଭା ଦର୍ଶକ ସମକ୍ଷେ,
ଦୂରୁ ଚାରୁ 'ସୋନଚୂଟ' ଅନୁପମ ଶୀରି,
ପାଶେ ନୀଳ ପର୍ଣ୍ଣାବୃତ 'ଡୋମିରଣା' ଗିରି,
ଏହି ଗିରିଶିରେ ଶୋଭେ ଯୁଗଳ ମୂରତି,
ଯାହାଙ୍କ ନାମରୁ ଗିରି ନାମର ଉତ୍ପତ୍ତି ।
ଗର୍ଭବତୀ ରଣାପତ୍ନୀ ଧରି ଅସ୍ତ୍ର କରେ,
ମାଛସାଧ ଭକ୍ଷିବାକୁ ବସିଛି ତତ୍ପରେ,
ସଚିନ୍ତିତ ରଣା ଖଡ୍ଗା ଧରି ସଂତର୍ପଣେ,
ଅନାଇଛି ଏକଦୃଷ୍ଟେ ମତ୍ସ୍ୟର କାରଣେ,
ସାଗର ଉଚ୍ଛୁଳି ଯିବ ଗିରି ପାଦତଳେ,
ଧରି ମାଛ ରଣାବୀର ସେହି ସିନ୍ଧୁଜଳେ -
ପୂରାଇବ ପତ୍ନୀ ଆଶା ବିହିତ ବିଧାନେ,
ବସିଛି ବୀରେନ୍ଦ୍ର ତେଣୁ ମାଛର ସନ୍ଧାନେ ।
ମେଣ୍ଟିବ ପତ୍ନୀର ସାଧ ଯେଉଁ ସମୟରେ,
ପୃଥିବୀ ବିନଷ୍ଟ ହେବ ଚଣ୍ଡ ପ୍ଳାବନରେ । (୯୦)

ଟେକିଛି ଗନ୍ଧମାର୍ଦ୍ଦନ ଶିର ସମୁନ୍ନତ,
ଜନପଦେ ପ୍ରକାଶାର୍ଥେ ପ୍ରାଚୀନ ମହତ୍ତ୍ୱ,
କେଉଁଝର ବକ୍ଷସ୍ଥଳେ ବିରାଜେ ପର୍ବତ,
ପୁରାକାଳେ ପରହିତେ ଥିଲେ ସଦା ରତ ।

ତ୍ରେତାଯୁଗେ ରାବଣାରି କୌଶଲ୍ୟାନନ୍ଦନ,
ଜାନକୀ ଉଦ୍ଧାର କଲ୍ପେ ଲଙ୍କାକୁ ଗମନ,
ସାଗର ଲଙ୍ଘନ ହେତୁ ଶାଖାମୃଗମାନ,
ଉପାଡ଼ି ପର୍ବତ କଲେ ସେତୁର ବନ୍ଧନ,
ସେକାଳେ ଗନ୍ଧମାର୍ଦ୍ଦନ ନଥିଲା ଏଠାରେ,
ଅବସ୍ଥିତ ଥିଲା ସେ ଯେ ବିନ୍ଧ୍ୟାଚଳ ପାରେ ।
ତତ୍ପରେ ସୁମିତ୍ରା-ସୁତ ବୀରେନ୍ଦ୍ର ଲକ୍ଷ୍ମଣ,
ଯେକାଳେ ରାବଣ ଶରେ ହେଲେ ଅଚେତନ,
ଅଶ୍ୱିନୀକୁମାର କରି ଭେଷଜ ନିର୍ଣ୍ଣୟ,
ପଠାଇଲେ ଅନ୍ୱେଷଣେ ପବନ ତନୟ,
ଉପାଡ଼ି ଗନ୍ଧମାର୍ଦ୍ଦନ ବୀର ହନୁମାନ,
ଉପସ୍ଥିତ ଯେଉଁଠାରେ ମନ୍ତ୍ରୀ ଜାମ୍ବବାନ,
ପାତ୍ରମିତ୍ର ସହ ବସି ଦୁଃଖିତ ଅନ୍ତରେ,
ସଚିନ୍ତିତ ଥିଲେ ରାତ୍ର ପ୍ରଭାତ ଭୟରେ ।
ଔଷଧ ସଂଗ୍ରହ ପରେ ନେଇ ଗିରିବରେ,
ଥୋଇଲେ ପାବନି-ବୀର ଓଡ଼ିଶା ଭିତରେ । (୯୧)

ସାନବଡ଼ ନୀଳ କଳା କେତେ ମହୀଧର,
ରାଜେ ଏହି ରାଜ୍ୟଚୟେ ନେତ୍ର ତୃପ୍ତିକର ।
ଏହିସବୁ ଗିରିବରୁ ଅସଂଖ୍ୟ ତଟିନୀ,
କନ୍ଦରୁ ବାହାରି ଧାଏଁ ତରଙ୍ଗରଂଗିନୀ,
ନିବିଡ଼ ଅରଣ୍ୟ ପଥେ ବଙ୍କିମ ଗତିରେ,
ପ୍ରବାହିତା ଖରସ୍ରୋତା ନିରବ ବୀଥିରେ ।
ସୁଗଭୀରା ଠାବେଠାବେ କାହିଁ ସ୍ୱଚ୍ଛଜଳା,
ଆବିଳା ପ୍ରପାତସ୍ଥାନେ ଅନ୍ୟତ୍ରେ ବିମଳା ।

କୌଠାରେ ଶୈବାଳ ଜାଲ ଆବରିଛି ଜଳ,
ନବୀନା ତଟିନୀ ଶିରେ କବରୀ ଉଜ୍ଜ୍ୱଳ,
କମଳ-କୋରକମାଳା କଣ୍ଠହାର ଗଳେ,
ସୁଗୋଲ ମୃଣାଳବଳା ଶୋଭେ କରତଳେ,
କଟିରେ ମରାଳମାଳ ମେଖଳା ଉଦୟ,
ପ୍ରବାହ ପାଟର ବସ୍ତ୍ର ଉଜ୍ଜ୍ୱଳତାମୟ,
ଧାଉଁଛି ଉଦ୍ଦେଶି ସିନ୍ଧୁ ଗତି ଅବିରାମ,
ପତି ଅନ୍ୱେଷଣେ ସତୀ ନାହିଁ ଯେ ବିଶ୍ରାମ ।

**- ସମାପ୍ତ -**

# ପରେ ସଂଗୃହୀତ

ବାଲେଶ୍ୱର ପୁରାକାଳେ ବିଖ୍ୟାତ ଭାରତେ;
ଉତ୍ତରଦେଶ ନାମେ ଯାହା ଲିଖିତ 'ଭାରତେ',
କାଁଶବାଁଶ ନଦୀ ଥିଲା ସୀମା ଦକ୍ଷିଣର,
ଉତ୍ତରେ ମେଦିନୀପୁର ପ୍ରଦେଶ ପ୍ରସର ।
ଏହାର ଦକ୍ଷିଣେ ସ୍ଥିତ କଳିଙ୍ଗ ପ୍ରଦେଶ,
ରାମାୟଣେ କିଷ୍କିନ୍ଧ୍ୟା ଯାହାର ନିର୍ଦ୍ଦେଶ ।
ହନୁମାନ, ଜାମ୍ବବାନ ଆଦି ବୀରଗଣ,
ଯେଉଁଠାରେ କରିଥିଲେ ଜନମ ଗ୍ରହଣ ।
ବୀରେନ୍ଦ୍ର, ସୁଗ୍ରୀବ, ବାଳି ଆଦି ନୃପଗଣ,
ବାଲେଶ୍ୱରେ କଦା କାହିଁ କଲେ ରାଜପଣ । (କ)

ଇଂରାଜ ଓଡ଼ିଶା ଦେଶ କରି ଅଧିକାର,
ଏକ ପ୍ରାନ୍ତଠାରୁ ଅନ୍ୟେ କ୍ଷମତା ବିସ୍ତାର,
ରାଜଧାନୀ ରୂପେ ସ୍ଥିର କଟକ ନଗର,
ନିଯୁକ୍ତ ଶାସନକର୍ତ୍ତା ରୂପେ 'ଆର କର' ।
ସେ ସମୟେ ବାଲେଶ୍ୱର କଟକ ଅଧୀନ,
ଜଏଣ୍ଟ ମାଜିଷ୍ଟ୍ରେଟ କରେ ଭାର ଥିଲା ଲୀନ ।
ବହୁପରେ ବାଲେଶ୍ୱର ହେଲାକ ସ୍ୱାଧୀନ,
କଲେକ୍ଟର ପଦେ ହେଲେ 'ରିକେଟ' ଆସୀନ ।
ରାଜାର ହୃଦୟଚକ୍ର ପ୍ରଜାର ଆସନ
ପ୍ରଜାର ହୃଦୟ-ରାଜ୍ୟେ ରାଜା ରାଜପଣ,

କିବା ରାଜା କିବା ପ୍ରଜା ଧନୀ କିବା ଦୀନ,
ପୀୟୂଷ-ପ୍ରଣୟ- ରସେ ସମାନ ବିଲୀନ,
ଯେଉଁଠାରେ ଏପରି ଭାବ କରଇ ବିରାଜ
ସଦା ସୁଖୀ ରାଜା ତଥା ପ୍ରଜାର ସମାଜ ।
'ହେନେରି ରିକେଟ' ସହ ବାଲେଶ୍ୱରବାସୀ,
ସେହି ଭାବ ସମ୍ମିଳନେ ନିୟତ ଉଲ୍ଲାସୀ,
ଯେପରି 'ରିପନ', 'କେନିଂ' ଭାରତ ଭିତରେ,
ସେପରି 'ରିକେଟ' ଯଶ ରାଜେ ବାଲେଶ୍ୱରେ ।
ନିରପେକ୍ଷ ଭାବେ କଲେ ସ୍ୱକାର୍ଯ୍ୟ ସାଧନ,
ପାଳନ ସୁଜନଗଣେ ଦୁଷ୍ଟର ଦମନ,
ନିମକ ମାହାଲେ ଥିଲା ବହୁ ଅତ୍ୟାଚାର,
ରିକଟ ପ୍ରବେଶେ ହେଲା ତାର ପ୍ରତିକାର ।
ବାଲେଶ୍ୱର ନଗରୀର ପଥ ପାର୍ଶ୍ୱସ୍ଥିତ,
ପ୍ରାଚୀନ ଅଶ୍ୱତ୍ଥ ବଟ ରିକେଟ ରୋପିତ,
ପଥଶ୍ରାନ୍ତ ପଥିକର ଶ୍ରାନ୍ତି ନାଶନରେ,
ରୋପିଲେ ପାଦପଚୟ ଦୟାର୍ଦ୍ର ହୃଦରେ ।
ନର୍ମାନ, ଜୋରାବ ପରେ ତାଙ୍କୁ ଅନୁସରି,
ନଷ୍ଟବୃକ୍ଷ ସ୍ଥାନ ପୂର୍ଣ୍ଣ କଲେ ଯତ୍ନ କରି ।
ଗୋମାଇ ମତାଇ ନଦୀ ପ୍ରଣାଳୀ ଯୋଜନ,
ଅବଧି ତାଙ୍କର ଯଶ କରୁଛି ଘୋଷଣ,
ଦୁର୍ଭିକ୍ଷେ ପ୍ରଜାର କରି ଦୁଃଖ ବିମୋଚନ,
ଅକ୍ଷୟ କୀରତି ଦେଶେ କଲେ ଅରଜନ,
ଆଉ ଏକ ଚିହ୍ନ ତାଙ୍କ ଅଛି ବାଲେଶ୍ୱରେ,
ନିହିତ ଅର୍ଦ୍ଧାଙ୍ଗୀ ତାଙ୍କ କବର ଭିତରେ । (ଖ)

'ବକତିଆର ଖିଲିଜି' ଆକ୍ରମଣୁ ଭୀତ,
ବଙ୍ଗାଧିପ ସ୍ୱଦେଶରୁ ହୋଇ ପଳାୟିତ,

ପ୍ରଥମେ ଆଶ୍ରୟ ନେଲେ ଆସି ନୀଳାଚଳେ,
ତାପରେ ସ୍ଥାପିଲେ ବାସ ଭଦ୍ରକ ଅଞ୍ଚଳେ,
ଓଡ଼ିଶା ନୃପତି ଠାରୁ ପାଇ ଭୂମିଦାନ,
ସେହିଠାରେ ନିରାପଦେ କଲେ ଅବସ୍ଥାନ ।
ତାଙ୍କ ଅନୁଚର ରୂପେ ବହୁ ବଙ୍ଗବାସୀ,
ସେହିଠାରେ ଆସି ହେଲେ ଓଡ଼ିଶା-ନିବାସୀ ।
ଭଦ୍ରକର ଅଧିବାସୀ ବଂଗାଳୀ ନିକର,
ଅଦ୍ୟାପି ବୋଲାନ୍ତି ବଙ୍ଗାଧିପ ଅନୁଚର । (ଗ)

ଭଦ୍ରକ ଦକ୍ଷିଣେ ଅଛି 'ଭଦ୍ରକାଳୀ' ଗ୍ରାମ,
ତହିଁରେ ବିରାଜେ ଦେବୀ 'ଭଦ୍ରକାଳୀ' ନାମ,
ଛାଗ, ମେଷ, ମହିଷର ରକ୍ତ କରି ପାନ,
ନିଜ ଭକ୍ତବୃନ୍ଦେ ସଦା କରନ୍ତି କଲ୍ୟାଣ ।
ଏଠାରେ ସାଳିନ୍ଦୀ ଦେଖି ଉତ୍ତରବାହିନୀ,
କାପାଳି ସ୍ଥାପିଲେ ଏହି ମହିଷମର୍ଦ୍ଦିନୀ । (ଘ)

ସାଳିନ୍ଦୀ ପୂରବ କୂଳେ 'ସାନଥିଆ' ଗ୍ରାମ,
ବଙ୍ଗାଳୀ ଗୋସ୍ୱାମୀ ବଂଶ ବ୍ରାହ୍ମଣଙ୍କ ଧାମ,
କ୍ଷୀରଚୋରା ଗୋପୀନାଥ କରି ଦରଶନ,
ଶ୍ରୀଚୈତନ୍ୟ ଉପନୀତ ବିଶ୍ରାମ କାରଣ,
କିଛିଦିନ ଏହିଠାରେ କରିଥିଲେ ବାସ,
ତାଙ୍କ ସ୍ମରଣାର୍ଥେ ହେଲା ମଠର ପ୍ରକାଶ,
ସେ ମଠେ ରକ୍ଷିତ ଏକ କନ୍ଥା ପୁରାତନ,
ଯହିଁରେ ଚୈତନ୍ୟ କଲେ ଶୀତ ନିବାରଣ,
ଚନ୍ଦନଚର୍ଚ୍ଚିତ କନ୍ଥା ଜୀର୍ଣ୍ଣ କଳେବର,
ପ୍ରତି ମାଘମାସେ ତାର ହୁଏ ସମାଦର । (ଙ)

ସାଳିନ୍ଦୀ ପଶ୍ଚିମ ତଟେ ଗ୍ରାମ କାଉପୁର,
ଯହିଁରେ ବିରାଜେ ରାୟ ମହାଶୟ ପୁର ।

ଲକ୍ଷ୍ମଣନାଥ ବଂଶଜ ଏହି ମହାଶୟ,
ସେହିଠାରୁ ଆସି ଏଠା ବାସର ନିର୍ଣ୍ଣୟ ।
ଯୁଗଳ କିଶୋର ଥିଲେ ଅତି ଗୁଣଧର,
ବସାଇଲେ ବ୍ରାହ୍ମଣଙ୍କ ଶାସନ ବିସ୍ତର । (ଚ)

'ଦେବର କୁଣ୍ଡ' ନାମରେ କ୍ଷୁଦ୍ର ସରୋବର,
ନିକଟେ ବିରାଜେ ତାର ନଦୀର ଗର୍ଭର,
ଆମୂଳ ରଚିତ ଏହା ମାଙ୍କଡ଼ାପଥର,
କି ହେତୁ କୌକାଳେ ହେଲା ଲୋକେ ଅଗୋଚର,
କେତେ ପୁରାତନ ସର ନାହିଁ ସେ କଳନା,
କାହାର ଖୋଦିତ ତାହା ଲୋକେ ନାହିଁ ଜଣା ।
ସାଳିନ୍ଦୀ ତଟିନୀ ବକ୍ଷେ ଏବେ ରାଜେ ସର,
ଦେଖିବାକୁ ପାନ୍ତି ଲୋକେ ମେଳା ଦିବସର । (ଛ)

ନିକଟେ ଆଗରପଡ଼ା କ୍ଷୁଦ୍ର ଜନପଦ,
ପୂର୍ବ ସ୍ୱାମୀଙ୍କର ଥିଲା ଅତୁଳ ସଂପଦ,
ମାନସିଂହ ବଂଶଧର ଏଠା ଜମିଦାର,
କାଳେ 'ରାଜା' ଉପାଧିର କଲେ ବ୍ୟବହାର,
କାହି ଗଲା ସେ ସଂପତ୍ତି ନ ମିଳେ ନିଶାଣ,
ଭଂଗାଗଢ଼ା ଚିରକାଳ ବିଧିଙ୍କ ବିଧାନ । (ଜ)

ତାପରେ 'ଆଡ଼ଡ଼ି' ଗ୍ରାମେ 'ଆଡ଼ଡ଼ି ଈଶ୍ୱର'
ଯାହାଙ୍କ ପ୍ରଭାବେ ନଷ୍ଟ ବିଷ ବିଷଧର,
ଗ୍ରାମ୍ୟ ଲୋକେ ଅହିରାଜ କଲେକ ଦଂଶନ,
ଚରଣାମୃତ ସର୍ବାଗ୍ରେ କରନ୍ତି ସେବନ । (ଝ)

'ପାଳିଆ' ଭଦ୍ରକ ପୂର୍ବେ ଅଛି ବର୍ତ୍ତମାନ,
ପ୍ରାଚୀନ ଦେଉଳ ଯହିଁ ପର୍ବତ ସମାନ,

ନାନା କାରୁକାର୍ଯ୍ୟ ଶୋଭା ଶରୀରେ ଯାହାର,
ସୌକାର୍ଯ୍ୟେ ଭୁବନେଶ୍ୱର ନୁହେଁ ତୁଳ ତାର,
ତାହା ମଧ୍ୟେ ବ୍ରହ୍ମା ମୂର୍ତ୍ତି ପ୍ରକାଣ୍ଡ ଶରୀର,
କିଏ ସ୍ଥାପଇତା ତାର କିଛି ନାହିଁ ସ୍ଥିର ।
ବ୍ରହ୍ମା ପାର୍ଶ୍ୱଦେଶେ ରାଜେ ବିଗ୍ରହ ସୁନ୍ଦର,
ଉପାଦାନ ଯାର କାଶୀ ମୁଗୁନି ପଥର,
ଅନନ୍ତଶଯ୍ୟାରେ ଶାୟୀ ଦେବ ନାରାୟଣ,
ଛତ୍ରରୂପେ ଶୋଭାପାଏ ଅହିର ବଦନ,
ନାଭିରୁ ହୋଇଛି ଜାତ ଫୁଲ ଶତଦଳ,
ତହିଁ ଉପବିଷ୍ଟ ବ୍ରହ୍ମା ଲୋହିତ ଅମଳ ।
ଏହି ସ୍ଥାନେ ବ୍ରହ୍ମା ମୂର୍ତ୍ତି ହୁଏ ଆରାଧିତ,
ଓଡ଼ିଶା ଅନ୍ୟତ୍ରେ ନାହିଁ ଏ ପୂଜା ବିହିତ ।
କେଉଁ କାଳେ କାହା କୃତ ମନ୍ଦିର ସୁନ୍ଦର,
ସ୍ଥାପିଲା ବ୍ରହ୍ମାଙ୍କୁ କିଏ ତାହାର ଭିତର,
କେ ଆଣିଲା ସମୁଜ୍ଜ୍ୱଳ ମୁଗୁନି ପଥର,
ଗଢ଼ିଲା ଅନନ୍ତ ଆଦି କେଉଁ କାରିଗର,
କେ କଲା କିହେତୁ ଏହି ପୂଜାର ବିଧାନ,
କାହାର ନିୟମେ ପୂଜା ହୁଏ ବର୍ତ୍ତମାନ,
ଲୋକମୁଖେ ନାହିଁ ମିଳେ ତାର ନିଦର୍ଶନ,
ଇତିହାସ କାଳଗର୍ଭେ ଏବେ ନିମଗନ ।
ମନ୍ଦିର ହୋଇଛି କାଳେ ଜୀର୍ଣ୍ଣ କଳେବର,
ଏବେ ମାତ୍ର ଉପଯୋଗୀ ଭୂମେ ପତନର ।
ସମୀପରେ ବ୍ରହ୍ମକୁଣ୍ଡ ନାମେ ସରୋବର,
ପ୍ରକାଣ୍ଡ ଆକାର ତାର ଏବେ ଭାବାନ୍ତର ।
ତାହାପାର୍ଶ୍ୱେ ଅବସ୍ଥିତ ପ୍ରାନ୍ତର ପ୍ରସର,
ପୁରାକାଳେ ଥିଲା ତାହା ମନ୍ଦିର ଚତ୍ୱର,

ଅନୁର୍ବର ଭୂମିଖଣ୍ଡ ନାହିଁ ଜନ୍ମେ ଘାସ,
ମରୁଭୂମି ପରି ଧୁଧୁ କରେ ବାରମାସ,
ବର୍ଷକେ ବାରୁଣୀ ଦିନ ତହିଁ ଜାତ ଜଳ,
ସ୍ଥାନେସ୍ଥାନେ ଲବଣାକ୍ତ, ମାତ୍ର ନିରିମଳ,
ଏଠାରୁ ନ' କୋଶ ଅଟେ ଲବଣ ସାଗର,
ତଥାପି ଏଠାରେ ଉସ୍ନ ଲବଣ ଜଳର,
ଈଶ୍ୱର ମହିମା କେତେ ସଂସାର ଭିତରେ,
କଳନା କରିବା ଏହା ଅସମ୍ଭବ ନରେ,
ଏଠାରେ ବସଇ ମେଳା ବାରୁଣୀ ବାସରେ,
ବହୁଲୋକ ହୋନ୍ତି ଜୁଣ୍ଡ ଧର୍ମ ଉଦ୍ଦେଶ୍ୟରେ ।
ପ୍ରାନ୍ତର ସମ୍ଭବ ଜଳ ଶିରେ ଅରପଣ,
ଭାଳନ୍ତି ଏ ଭବେ ପୁନଃ ନୋହିବ ଜନମ । (ଞ)

ମନ୍ଦିର ସମୀପେ ରାଜେ ମଜିଦ ପ୍ରାଚୀନ,
ପଠାଣ ସେନାନୀ ନାମେ ହମମ୍ମଦ ଦୀନ,
ଦେବାଳୟ ପ୍ରାଚୀରର ଭଗ୍ନ ଦ୍ରବ୍ୟ ଜାତେ,
ଗଢ଼ିଲେ ଏହାକୁ ହିନ୍ଦୁ ଦେଉଳ ସାକ୍ଷାତେ । (ଟ)

ନିକଟେ ପାଳିୟାବିନ୍ଧା ଗ୍ରାମ ଅପ୍ରସର,
ବାଲେଶ୍ୱର ଦାସବଂଶ ପୁରାତନ ଘର,
ଅଦ୍ୟାବଧି ଘରଡିହ ସେଠାରେ ଗୋଚର,
ଜନଶୂନ୍ୟ ବନପୂର୍ଣ୍ଣ ବସେ ବନଚର ।.(ଠ)

ପଠାଣରାଜତ୍ୱ କାଳେ ଆଗା ଜାତିଗଣ,
ବାଲେଶ୍ୱରେ ଆସି କଲେ ବାସ ନିରୂପଣ,
ବାଣିଜ୍ୟ ବ୍ୟବସା ତାଙ୍କ ଜୀବିକା ଅର୍ଜନ,
ସେହେତୁ ତଟିନୀ ତଟେ ପଲ୍ଲୀର ସ୍ଥାପନ,
କରିବାକୁ ନିଜ ଜାତି ମହିମା ପ୍ରଚାର,
ରଖିଲେ ପଲ୍ଲୀର ନାମ ଯେ 'ଆଗାବଜାର',

ମଜିଦ ନିର୍ମାଣ ଆଉ ସରସୀ ଖନନ,
ସ୍ଥାୟୀ କରିଅଛି ତାଙ୍କ ସେ ନାମକରଣ । (ତ)

ବୀରବର ମାନସିଂହ ଅମ୍ବର ରାଜନ,
ପଠାଣ ଦମନେ ଓଡ଼ିଶାକୁ ଆଗମନ,
ବିପକ୍ଷ ବିଜୟ କାର୍ଯ୍ୟ ସମାପନ ପରେ,
ଭଦ୍ରକୁ ଲେଉଟି ଉପନୀତ ବାଲେଶ୍ୱରେ,
ବର୍ଷା ହେତୁ କିଛିକାଳ କରି ଅବସ୍ଥାନ,
ରାଜବିଧି ପ୍ରଚଳନ ଶାସନ ବିଧାନ ।
ଯେଉଁଠାରେ କରିଥିଲେ କଟକ ସ୍ଥାପନ,
'ମାନସିଂବଜାର' ତାର ନାମ ଅରପଣ ।
ସେକାଳେ ସେଠାରେ ଥିଲା ବିସ୍ତୀର୍ଣ୍ଣ ବଜାର,
ପରିଣତ ଏବେ ଉଗ୍ର କ୍ଷତ୍ରିଙ୍କ ଆଗାର ।
ମାନସିଂହ ସୈନ୍ୟରୂପେ ଏହି କ୍ଷତ୍ରିଗଣ,
ବଂଗଳାରୁ ଓଡ଼ିଶାକୁ କଲେ ଆଗମନ । (ଢ)

ତାହା ପାର୍ଶ୍ୱେ ସ୍ଥିତ ଗ୍ରାମ ନାମେ ବଟେଶ୍ୱର,
ବଟବୃକ୍ଷ ତଳେ ରାଜେ ଶଶାଙ୍କଶେଖର ।
ଅଧିକାଂଶ ବଂଗବାସୀ ଏଥେ କଲେ ବାସ,
ବ୍ରାହ୍ମଣ, ବଣିକ, ବୈଦ୍ୟ ସୁବିଧା ସକାଶ ।
ରାଜକାର୍ଯ୍ୟେ ନିୟୋଜିତ ଥିଲେ ସର୍ବଜନ,
ଧନେ, ମାନେ ଥିଲା ପଲ୍ଲୀ ଆନନ୍ଦ-ଭବନ,
ନୃତ୍ୟ, ଗୀତ କ୍ରୀଡ଼ା ରଂଗେ ସଦା ମତ୍ତ ସର୍ବେ,
ସଦାନନ୍ଦ ଯୁକ୍ତଚିତ୍ତ ଯେସନ ଉତ୍ସବେ ।
କେଉଁ ଘରେ ଦେଖାଦେଲେ ଦେବୀ ଦଶଭୁଜା,
କେଉଁଘରେ ମୁକ୍ତକେଶୀ ଭୀମା ଶ୍ୟାମାପୂଜା ।
ସୁସଜ୍ଜିତ ହେଲା ଘର ବିହିତ ବିଧାନେ,
ବାଜିଲା ନହବତ୍ ବାଦ୍ୟ ଧିନକଟା ଧାନେ ।

ନାଚିଲେ ନର୍ତ୍ତକୀବୃନ୍ଦ ପ୍ରକମ୍ପିତ କର,
ଧରିଲେ ଗୀତର ତାନ ସୁମଧୁର ସ୍ୱର,
ବାଜିଲା ତବଲା ବାୟାଁ ତାଳ ଅନୁସରି
ସାରଙ୍ଗ ସହାୟ କଲା ତାନର ମାଧୁରୀ,
ସୁଲୟେ ମନ୍ଦିରା ବାଜେ ଧୃତ ଦୁଇ କରେ,
ନର୍ତ୍ତକୀର କମକାନ୍ତି ମନ-ପ୍ରାଣ ହରେ ।
ବଂଗାଳୀଙ୍କ ସଂଗ ଗୁଣେ ଦେଶବାସୀ ଗଣ,
ଦୁର୍ଗୋତ୍ସବ ଶ୍ୟାମାପୂଜା କଲେ ଆଚରଣ ।
ଜ୍ୟୋତିଷ-ଭବନେ ତେଣୁ ଅବଧି ପୂଜିତ,
ପୁରାତନ ପୂଜା ବୋଲି ନଗରେ ବିଦିତ । (ଣ)

ସୁବିଖ୍ୟାତ ବଙ୍କିମଙ୍କ ପିତା ମହାଶୟ,
ଏହିଠାରେ କରିଥିଲେ ବାସର ନିର୍ଣ୍ଣୟ,
ଯାଦବ ତାଙ୍କର ନାମ ନୈହାଟୀରେ ଧାମ,
ନିମକ ମାହାଲେ କଲେ ଦାରୋଗାର କାମ,
ପଲ୍ଲୀର ବିଭବ ଚିହ୍ନ ଏବେ ଅନ୍ତର୍ଦ୍ଧାନ,
ଦୀନଜନେ ପୂରିଛି ସେ କମନୀୟ ସ୍ଥାନ । (ତ)

ଦକ୍ଷିଣେ ମାକଲପୁର ତନ୍ତୁବାୟ ଗ୍ରାମ,
'ମାକୁ' ଶବ୍ଦ ଅପଭ୍ରଂଶୁଁ ଜାତ ପଲ୍ଲୀ ନାମ,
ବହୁ ତନ୍ତୀ କରି ଏଠା ବାସ ନିରୂପଣ,
କଲେ ସୂକ୍ଷ୍ମବସ୍ତ୍ର ବୁଣି ସୁଖ୍ୟାତି ଅର୍ଜନ,
ବଂଗଳା ତାଙ୍କର ଥିଲା ଆଦି ବାସସ୍ଥାନ,
ଅଶ୍ୱିନୀ କୁଳରେ ଜନ୍ମ ସେ ହେତୁ ସମ୍ମାନ,
କାଳେ ଥିଲା ଏହି ଗ୍ରାମ ସୁଖ ଶାନ୍ତି ଦାମ,
ଭିଡ଼ାଭିଡ଼ି ଗୃହଚୟ ଶୋଭା ଅଭିରାମ ।
ବସ୍ତ୍ର ବ୍ୟବସାୟ ଯୋଗେ ଧନ ଉପାର୍ଜନ,
ସ୍ୱଚ୍ଛଳତା ସହ କଲେ ଜୀବନ ଯାପନ ।

କ୍ରମେ 'ମେଞ୍ଚେଷ୍ଟର' କୃଷ୍ଣ ଘନର ଉଦୟ
ତନ୍ତୀକୁଳ ସୁଖଶାନ୍ତି ଭୀଷଣ ପ୍ରଳୟ ।
ଉପନୀତ ପୋତଭରା ବିଲାତି ବସନ,
ବିନିମୟେ ଗଲା ତୁଳା, ତଣ୍ଡୁଳ, ଗହମ ।
ବ୍ୟବସାୟ-ମହାଲକ୍ଷ୍ମୀ ହେଲେ ପ୍ରତିକୂଳ,
କଣ୍ଡା ଛାଡ଼ି ତନ୍ତୀକୁଳ ଧଇଲେ ଲାଙ୍ଗୁଳ । (*)

ଓଡ଼ିଶାର ସିଂହାସନ କରି ଅଧିକାର,
'କତଲୁ' ଯେକାଳେ କଲେ କ୍ଷମତା ପ୍ରସାର,
ପଠାଣ ଶାସନ ଲାଗି ସମ୍ରାଟ ମୋଗଲ,
ମିର୍ଜା ଅଜିଜକୁ ଦ୍ୱରା ପ୍ରେରିରେ ଉତ୍କଳ,
ବାଲେଶ୍ୱରେ ସୈନ୍ୟ ସହ ମିର୍ଜା ଉପନୀତ,
କିଛିକାଳ ଏହିଠାରେ ହେଲେ ଅବସ୍ଥିତ,
ତାଙ୍କ ଅବସ୍ଥାନ କାଳେ ଖୋଦିତ ଯେ ସର,
ତାଙ୍କ ନାମୁ ନାମ ହେଲା 'ମିରଜା ପୋଖର' । (ଥ)

ଓସମାନ, କତଲ ଖାଁ ନରପତି ସୁତ,
ସେରପୁରରେ ମାନସିଂହ ଠାରେ ପରାଭୂତ,
ଓଡ଼ିଶାକୁ ପଳାଇଲେ ରକ୍ଷାର କାରଣ,
ମାନସିଂହ କଲେ ତାର ପଛରେ ଧାବନ ।
ମହେଶପୁର ନିକଟେ ଲଙ୍ଘି ସ୍ୱର୍ଣ୍ଣରେଖା,
ଓଡ଼ିଶାରେ ଓସମାନ ଆସି ଦେଲେ ଦେଖା ।
ସେହଦିନୁ ସ୍ୱର୍ଣ୍ଣରେଖା ଓଡ଼ିଶା ଉତ୍ତର,
ବଂଗଳା ଦକ୍ଷିଣ ସୀମା ରୂପେ ସ୍ଥିରତର ।
ପ୍ରବାଦ ପ୍ରଚଳ ତେଣୁ "ହଳ୍‌ଦି ମଖାମଖି"
ସ୍ୱର୍ଣ୍ଣରେଖା ପାର ହେଲେ ବନ୍ଧୁ ଦେଖାଦେଖି । (ଦ)

---

*(*) ହଳର ଗୋରୁ ଅଡ଼ାଇବା ସକାଶ ଗୋ-ଲାଙ୍ଗୁଳ ମୋଡ଼ିବାକୁ ହୁଏ ।*

ସେରପୁର ପରାଭବ ପରେ ଓସମାନ,
ବାରବର୍ଷ ଯୁଦ୍ଧ କାର୍ଯ୍ୟ ଲଭିଲେ ବିରାମ,
ତାପରେ ସୈନ୍ୟବାହିନୀ କରି ଆୟୋଜନ,
ପ୍ରସ୍ତୁତ ମୋଗଲ ସହ କରିବାକୁ ରଣ,
ଭେଟିଲେ ସୁଜାତ ସହ ସ୍ୱର୍ଣ୍ଣରେଖା ତଟେ,
ପରାଜୟ ଅବଶେଷେ ମୋଗଲ ନିକଟେ,
ଓଡ଼ିଶାରେ ପଠାଣଙ୍କ ପ୍ରଭା ଅବସାନ,
ତେଣୁ ଅଧିକାର କଲେ ମୋଗଲେ ସେ ସ୍ଥାନ ।

ମୋଗଲ ଅମଳ କାଳେ ଦୁଇ ବଂଶଧର,
ବାଲେଶ୍ୱରେ ପ୍ରଭାଶାଳୀ ଦକ୍ଷିଣ ଉତ୍ତର,
ଉତ୍ତରେ ଲକ୍ଷ୍ମଣନାଥ ରାୟ ମହାଶୟ,
କାୟସ୍ଥ ବଂଶରେ ଜନ୍ମ ପ୍ରତାପ ନିଳୟ,
ଦକ୍ଷିଣ କୁବେରା ଭୂୟାଁ ଚୌହାନ କ୍ଷତ୍ରିୟ,
କ୍ଷମତାରେ ସମକକ୍ଷ ରାୟଙ୍କ ସ୍ଥାନୀୟ,
ନାନାସ୍ଥାନେ ଏହାଙ୍କର ବଂଶଧରଗଣ,
କ୍ରୟକରି ଭୂସଂପତ୍ତି ବାସ ନିରୂପଣ,
ଏକକାଳେ ସେହିମାନେ ଥିଲେ ବଳୀୟାନ,
ଧନେ, ମାନେ, କୁଳେ, ଶୀଳେ ସର୍ବ ଆଗୁଆନ,
ସୋର, କାଉପୁର ଆଉ ଦେହୁଡ଼ଦା, ମୃଗଦା,
ରାୟବଂଶ ଶୌର୍ଯ୍ୟ-ବୀର୍ଯ୍ୟେ କମ୍ପିତ ସର୍ବଦା,
ଭୂୟାଁ ବଂଶ ଅବତଂଶ ରାୟ ବଂଶ ପରି,
ସ୍ଥାପିଲେ ପ୍ରଭୁତ୍ୱ ନିଜ ବଳ ଅନୁସରି,
ଯୟନ୍ତିରା, ତାଳପଦା ଆଉ ଚୁଡ଼ାମନ,
ନଦିଗାଁ, କାଁଟିଆ ଆଦି ସ୍ଥାନ ଅଗଣନ,
ସେକାଳେ ପ୍ରଭାବେ ତାଙ୍କ ହେଲା ପ୍ରକମ୍ପିତ,
ବିଧିଙ୍କ ବିଧାନେ ଏବେ ପ୍ରଭା ଅସ୍ତମିତ ।

– ସମାପ୍ତ –

# ପରିଶିଷ୍ଟ

୧. ଜଗନ୍ନାଥ ସଡ଼କ ଉଲୁବେଡ଼ିଆ ଠାରୁ ପୁରୀ ପର୍ଯ୍ୟନ୍ତ ବିସ୍ତୃତ । ଏହି ସଡ଼କରେ ଯେତେ ପୋଲ ଅଛି ତନ୍ମଧ୍ୟରେ ନୁଣିଆଯୋଡ଼ି ପୋଲ ସର୍ବାପେକ୍ଷା ଉଚ୍ଚ ଓ ଦୀର୍ଘ । ଏହା ବାଲେଶ୍ୱର ସହରର ଠିକ୍ ଉତ୍ତରରେ ଅବସ୍ଥିତ । ଏଥିରେ ଦ୍ୱିତଳ ଗୃହ ସମାନ ଉଚ୍ଚ ଏବଂ ସୁବୃହତ କୁଠରି ପରି ବିସ୍ତୃତ ୧୯ଗୋଟି ଫୁକାର ଅଛି ।

୨. କାଁଶବାଁଶ ପୋଲ ସୋର ଦକ୍ଷିଣରେ ଅବସ୍ଥିତ । ୪୦।୫୦ ହାତ ବ୍ୟବଧାନରେ ୩ଗୋଟି ପୋଲ ୩ଗୋଟି ଧାର ଉପରେ ଅଛି । ଏହି ୩ଧାର ପୋଲ ପାର ହୋଇ ମିଳିତାବସ୍ଥାରେ କାଁଶବାଁଶ ନାମରେ ପ୍ରବାହିତ । ଏଥିରେ ୧୬ଗୋଟି ଫୁକାର ଅଛି ।

୩. ଜଗନ୍ନାଥ ସଡ଼କର ପ୍ରତ୍ୟେକ ୪।୫କୋଶ ଅନ୍ତରରେ ପଥିକମାନଙ୍କର ଅବସ୍ଥାନ ଉପଯୋଗୀ ନାନା ପଣ୍ୟପୂର୍ଣ୍ଣ ଚଟୀ ଥିଲା । ବର୍ତ୍ତମାନ ରେଳହେତୁ ଅଧିକାଂଶ ଲୋପ ହୋଇଅଛି ।

୪. ବାଲେଶ୍ୱର ଏଲାକାରେ ପୂର୍ବେ ସୁବର୍ଣ୍ଣରେଖାର ଦକ୍ଷିଣଠାରୁ ବୈତରଣୀର କୂଳ ପର୍ଯ୍ୟନ୍ତ ପ୍ରତ୍ୟେକ ପ୍ରଧାନ ଚଟୀ (ଯଥା ଗୁଡ଼ିଖାଲ, ବସ୍ତା, ବାଲେଶ୍ୱର, ସୋର, ଭଦ୍ରକ, ଆଖୁଆପଦା) ନିକଟରେ ଗୋଟିଏ ଗୋଟିଏ ଧର୍ମଶାଳା ଥିଲା । ଏହି ସମସ୍ତ ଧର୍ମଶାଳା ଇଷ୍ଟକ ନିର୍ମିତ ଶତାଧିକ ହସ୍ତ ଦୀର୍ଘ ଶ୍ରେଣୀବଦ୍ଧ ଘର ଓ ସାମନାରେ ଦଲାଣ, ସମ୍ମୁଖା ସମ୍ମୁଖି ଭାବେ ଦୁଇ ଶ୍ରେଣୀରେ ଅବସ୍ଥିତ ଥିଲା । ମଧ୍ୟରେ ତୃଣାବୃତ ବିସ୍ତୀର୍ଣ୍ଣ ପ୍ରାଙ୍ଗଣ । ପ୍ରାଙ୍ଗଣର ମଧ୍ୟସ୍ଥଳରେ ଶ୍ରେଣୀବଦ୍ଧ ଅଶ୍ୱତ୍ଥ ଓ ବଟବୃକ୍ଷ ଏବଂ ଗୋଟିଏ ଗୋଟିଏ କୂପ । ଅସହାୟ ଦୁଃଖୀ ଯାତ୍ରୀମାନେ ଏହି ଧର୍ମଶାଳାମାନଙ୍କରେ ଆଶ୍ରୟ ନେଉଥିଲେ । ବର୍ତ୍ତମାନ ସେମାନଙ୍କର ଅସ୍ତିତ୍ୱ ଲୋପ ହୋଇଅଛି, ସ୍ଥାନେସ୍ଥାନେ ଭଗ୍ନାବଶେଷ ମାତ୍ର ଅବଶିଷ୍ଟ ।

୫. ଜଗନ୍ନାଥ ସଡ଼କ ନିର୍ମାତା କଲିକତା ନିବାସୀ ରାଜା ସୁଖମୟ ବାହାଦୁରଙ୍କ ମାତା ଜଗନ୍ନାଥ ଦର୍ଶନ ସକାଶ ଆସି ଯାତ୍ରୀମାନଙ୍କର କଷ୍ଟ ଦେଖି ପୁତ୍ରଙ୍କୁ ଏହି ସଡ଼କ ନିର୍ମାଣ ସକାଶ ଅନୁରୋଧ କରିବାକୁ ପୁତ୍ର ଦେଢ଼ଲକ୍ଷଟଙ୍କା ବ୍ୟୟ କରି ଉଲବେଡ଼ିଆ ଠାରୁ ପୁରୀ ପର୍ଯ୍ୟନ୍ତ ଏକ ରାସ୍ତା ନିର୍ମାଣ କରାଇଥିଲେ । ରାସ୍ତାରେ ଆବଶ୍ୟକ ଅନୁସାରେ ପୋଲମାନ ମଧ୍ୟ ନିର୍ମିତ ହୋଇଥିଲା । (୧୮୨୭ ଖ୍ରୀଷ୍ଟାବ୍ଦ) ତାତ୍କାଳିକ ଗଭର୍ଣ୍ଣର ଜେନେରାଲ ଲର୍ଡ଼ ଆମହର୍ଷ୍ଟଙ୍କ ଅନୁମତି ଅନୁସାରେ ଏହି ରାସ୍ତା ନିର୍ମିତ ହୋଇଥିଲା । ସେ ସମୟରେ ଶସ୍ତାଥିବାରୁ ଏତେ ଅଳ୍ପ ବ୍ୟୟରେ କାର୍ଯ୍ୟ ସମାଧାନ ହୋଇଥିଲା । ପରେ ୧୮୬୭-୬୮ରେ ସଡ଼କ ପକ୍କା ହୋଇଅଛି ।

୬. ପ୍ରାଚୀନ କାଳରେ ଯାଜପୁର ଓଡ଼ିଶାର ରାଜଧାନୀ ଥିଲା । ୧୫୬୭ ସାଲରେ ଓଡ଼ିଶାର ରାଜା ଗଜପତି ବଂଶୀୟ ମୁକୁନ୍ଦଦେବ କଳାପାହାଡ଼ଙ୍କ ଦ୍ୱାରା ପରାଭୂତ ଓ ହତ ହେବାରୁ ତାଙ୍କ ମନ୍ତ୍ରୀଙ୍କ ଦ୍ୱାରା ରାଜଧାନୀ ଖୋରଧାକୁ ସ୍ଥାନାନ୍ତରିତ ହୋଇଥିଲା ।

୭. ୧୫୫୯ ଖ୍ରୀ: ବଂଗଳାର ପଠାଣ ନବାବ ଇବ୍ରାହିମ୍ ଖାଁ ସଲିମାନଙ୍କ ଦ୍ୱାରା ତାଡ଼ିତ ହୋଇ ଓଡ଼ିଶାର ରାଜା ତୈଲଙ୍ଗ ମୁକୁନ୍ଦ ଦେବଙ୍କ ଆଶ୍ରୟରେ ଜାଜପୁରରେ ବାସ କରିଥିଲେ ।

୮. ସଲିମାନଙ୍କ ବିପକ୍ଷରେ ମୁକୁନ୍ଦଦେବଙ୍କ ସାହାଯ୍ୟ ପାଇବା ଆଶାରେ ସମ୍ରାଟ ଆକବର ହୋସେନ ଖାଁଙ୍କୁ ଦୂତ ସ୍ୱରୂପ ପଠାଇଥିଲେ । (୧୫୬୭ ଖ୍ରୀ.)

୯. ୧୫୮୦ ଖ୍ରୀ. ବଂଗଳାର ନବାବ କତଲୁ ଖାଁ ମହାରାଜା ମାନସିଂହଙ୍କ ଦ୍ୱାରା ପରାଭୂତ ହୋଇ ଏହିଠାରେ ଦଳବଦ୍ଧ ସହ ଆସି ବାସ କରିଥିଲେ ।

୧୦. ୧୫୯୮ଖ୍ରୀ. ମାନସିଂହଙ୍କ ପୁତ୍ର ମହାସିଂହ କତଲୁ ଖାଁଙ୍କ ପୁତ୍ର ଓସମାନଙ୍କ ଦ୍ୱାରା ଏହିଠାରେ ପରାଭୂତ ହୋଇଥିଲେ ।

୧୧. କନିକାର ରାଜା ଏକ ସମୟରେ ଅତି କ୍ଷମତାଶାଳୀ ଥିଲେ । ଇଂରାଜ ପ୍ରଥମ ଅଧିକାର ସମୟରେ ତାଙ୍କ ସହିତ ୨।୩ଥର ଯୁଦ୍ଧ କରିଥିଲେ । ଅବଶେଷେ ୧୮୦୫ସାଲରେ ସନ୍ଧି ହୋଇଥିଲା । ଇଂରାଜ ତାଙ୍କୁ ରାଜା ବୋଲି ସ୍ୱୀକାର କରିଥିଲେ (Hunter's Orissa) । ବ୍ରାହ୍ମଣୀ ଓ ବୈତରଣୀର ସଂଗମସ୍ଥଳରେ ତାଙ୍କର ପୂର୍ବ ଗଡ଼ ଥିଲା । ୧୨୪୭ସାଲର ଛୟଲାବୀରେ ସେହି ସ୍ଥାନ ବୁଡ଼ି

ଯିବାରୁ ରାଜକନିକା ନଗରକୁ ରାଜଧାନୀ ଉଠି ଆସିଅଛି । ରିଗାରେ ମଧ୍ୟ ଏକ ଗଡ଼ ଥିଲା । ମୋଗଲମାନେ ଏଠାରେ ରାଜାଙ୍କୁ ଅର୍ଦ୍ଧ ସ୍ୱାଧୀନ ବୋଲି ସ୍ୱୀକାର କରୁଥିଲେ । ଇଂରେଜମାନେ ତାଙ୍କ ରାଜସ୍ୱ ସ୍ଥାୟୀ ବନ୍ଦୋବସ୍ତ କରିଅଛନ୍ତି ।

୧୨. ମକୁଭୂଇଁର ପୂର୍ବ ବୃତ୍ତାନ୍ତ ୮୦ନମ୍ବର ଦେଖ । ତାଙ୍କର ଅଧିକାର ପୂର୍ବେ ଭେଡ଼ା ଓ ଆଙ୍କୁଡ଼ା ପରଗଣାରେ ୧୪ଜଣ ସ୍ୱତନ୍ତ୍ର ସ୍ୱାଧୀନ ଜମିଦାର ଥିଲେ । ମକୁଭୂଇଁ ସେ ସମସ୍ତଙ୍କୁ ପରାଭବ ଓ ତାଙ୍କ ଜମିଦାରୀ ଅଧିକାର କରି ଏକଛତ୍ର ଅଧୀଶ୍ୱର ହୋଇଥିଲେ । କନିକା ରାଜାଙ୍କ ସହିତ ଏହାଙ୍କର ଅନେକ ଥର ଯୁଦ୍ଧ ହୋଇଥିଲା । ପରେ ତାଙ୍କ ବଂଶଧରମାନେ ବିଳାସାସକ୍ତ ହୋଇ ଓ ପରସ୍ପରଙ୍କ ମଧ୍ୟରେ କଳହ କରି ସମସ୍ତ ସଂପତ୍ତି ନଷ୍ଟ କଲେ ।

୧୩. ଆଙ୍କୁଡ଼ା ଜମିଦାରୀ ରାଜସ୍ୱ ବାକି ନିଲାମରେ କଟକ କଲେକ୍ଟରଙ୍କ ତାତ୍କାଳିକ (ଦେବାନ) ସେରସ୍ତାଦାର ଆନ୍ଦୁଳ ନିବାସୀ କାଶୀନାଥ ମଲ୍ଲିକ ନେଇଥିଲେ ।

୧୪. ଚୁଡ଼ାମଣିର କାନନଗୋ ବଂଶ ଅତି ପ୍ରାଚୀନ । ସେମାନେ ମୋଗଲମାନଙ୍କ ସମୟରେ କାନନଗୋ କାର୍ଯ୍ୟ କରୁଥିଲେ । ସେମାନେ କ୍ଷତ୍ରିୟ ଥିଲେ, କରଣ ହୋଇଅଛନ୍ତି ବୋଲି କଥିତ । ଏକ ସମୟରେ ସେମାନେ ସମୃଦ୍ଧିଶାଳୀ ଥିଲେ । ଋଣରେ ଜଡ଼ିତ ହେବାରୁ ବର୍ତ୍ତମାନ ଜମିଦାରୀ ମଣ୍ଡଳମାନଙ୍କର ହସ୍ତଗତ ହୋଇଅଛି ।

୧୫. ମରହଟ୍ଟାମାନଙ୍କ ଶାସନ ସମୟରେ ସୋରରେ ସେମାନଙ୍କ ଜଣେ ପ୍ରଧାନ କର୍ମଚାରୀର ଆବାସ ଥିଲା । (ପ୍ୟାରୀବାବୁଙ୍କ ଓଡ଼ିଶା ଇତିହାସ) ବର୍ତ୍ତମାନ ଡାକ୍ତରଖାନା ଯେଉଁଠାରେ ଅବସ୍ଥିତ ସେହିଠାରେ ତାଙ୍କର କଚେରି ଥିବାରୁ କିଛିକାଳ ପୂର୍ବେ ନିଦର୍ଶନ ଥିଲା, ଡାକ୍ତରଖାନା ହେବାରୁ ତାହା ଲୋପ ହୋଇଅଛି । ଏହି ସ୍ଥାନରେ ସ୍ଥିତ ବୃହତ୍ ପୁଷ୍କରିଣୀ ମରହଟ୍ଟାମାନଙ୍କର ଖୋଦିତ ବୋଲି କଥିତ । ସୋରରେ ବାସ କରୁଥିବା କରଣମାନେ ସେହି ସମୟରେ ଦକ୍ଷିଣରୁ ଆସି ମରହଟ୍ଟାମାନଙ୍କର ଅଧୀନରେ କାର୍ଯ୍ୟ କରୁଥିଲେ । ଯେଉଁମାନେ ପିଆଦାର କାର୍ଯ୍ୟ କରୁଥିଲେ ସେମାନଙ୍କର ବାସସ୍ଥାନ ଅବଧି ପାୟକସାହି ନାମରେ ଅଭିହିତ ।

୧୬. ସୋରର ନାନାସ୍ଥାନର ମୃତ୍ତିକା ତଳେ ମୁଗୁନି ପ୍ରସ୍ତର ନିର୍ମିତ ଅନେକ ମୂର୍ତ୍ତି ମିଳେ । ମାତ୍ର ଆକୃତିରେ ସେ ସବୁ କି ମୂର୍ତ୍ତି ଏବଂ କେଉଁ ସମୟରେ ଓ କେଉଁଠାରୁ ଆସିଲା ତାହା ସ୍ଥିର କରିବା କଠିନ ।

୧୭. ସୋରର ପ୍ରାଚୀନ ଓ ଆଧୁନିକ ଜଗନ୍ନାଥ ସଡ଼କର ସନ୍ଧିସ୍ଥଳରେ ଉଦ୍ଧବ ଚରଣ ଦାସ ଏକ ପ୍ରକାଣ୍ଡ ପୁଷ୍କରିଣୀ ଖନନ କରି ତହିଁରେ ଘାଟ ବନ୍ଧାଇ ତାହା ଉପରେ ଏକ ସୁନ୍ଦର ଦଲାଣ କରିଅଛନ୍ତି । ସମ୍ବଳ ବିହୀନ ଯାତ୍ରୀମାନଙ୍କର ତାହା ଆଶ୍ରୟସ୍ଥାନ । ତାହା ସନ୍ନିକଟରେ ଉତ୍ତରେଶ୍ୱର ବଜାର ଓ ଚଟୀ ତାଙ୍କର ସ୍ଥାପିତ । ପୋଖରୀର ଦଲାଣ କାନ୍ଥରେ ପ୍ରସ୍ତର ଫଳକରେ ବଂଗଳା ଅକ୍ଷରେ ଲେଖାଅଛି ।

"ବିନ୍ଦୁ ବସୁ ସିନ୍ଧୁ ଇନ୍ଦୁ ଶକେ ସୁଚି ମାସେ,
ସ୍ମର ତିଥି ଏକାଦଶ ସଂଖ୍ୟକ ଦିବସେ,
ଏହି ଖ୍ୟାତ ବିଷ୍ଣୁଦ୍ଦେଶେ କରି ଯତ୍ନ ନିଷ୍ଠା,
ଉଦ୍ଧବଚରଣ ଦାସ କରିଲ ପ୍ରତିଷ୍ଠା ।"

ସୋରବାସୀମାନେ ବାଲେଶ୍ୱର ଜିଲ୍ଲା ମଧ୍ୟରେ ମୋକଦ୍ଦମାବାଜ ବୋଲି ବିଖ୍ୟାତ ।

୧୮. ସେରଗଡ଼ଠାରେ ଚୈତନ୍ୟ ଚରଣ ଦେ କୃତ ସୁନ୍ଦର ସୁବିସ୍ତୀର୍ଣ୍ଣ, ଘାଟବନ୍ଧା ଏକ ପୁଷ୍କରିଣୀ ଅଛି ।

୧୯. ପ୍ରବାଦ ଅଛି, ଅତି ପ୍ରାଚୀନ କାଳରେ ବାଣ ରାଜା ସମୁଦ୍ରଙ୍କୁ ତପରେ ତୁଷ୍ଟକରି କେତେକ ସ୍ଥାନ ନେଇ ବାଲେଶ୍ୱର ନଗର ସ୍ଥାପନ କରିଥିଲେ । ପୁରାଣୋକ୍ତ ବଳିରାଜାଙ୍କ ଜ୍ୟେଷ୍ଠପୁତ୍ର ବାଣ । ବଳି ଶ୍ରୀକୃଷ୍ଣଙ୍କ ଛଳନାରେ ପୃଥିବୀସ୍ଥ ଭୂମିରୁ ବଞ୍ଚିତ ହେବାପରେ ବୋଧହୁଏ ବାଣ ଅନନ୍ୟୋପାୟ ହୋଇ ସମୁଦ୍ରଠାରୁ ଭୂମି ଭିକ୍ଷା କରିବାକୁ ବାଧ ହୋଇଥିଲେ । ବାଲେଶ୍ୱର ନାମର ଦୁଇଟି କାରଣ ଲୋକେ କହିଥାନ୍ତି (୧) ବାଲୁକା ଉପରେ ସ୍ଥାପିତ ତେଣୁ ବାଲେଶ୍ୱର । (୨) ବାଣରାଜା ସ୍ଥାପିତ ତେଣୁ ବାଣେଶ୍ୱର ଏବଂ ବାଣେଶ୍ୱରର ଅପଭ୍ରଂଶ ବାଲେଶ୍ୱର । ଏ ସ୍ଥଳେ କହିବାର ଆବଶ୍ୟକ, ପ୍ରାଚୀନ କାଳରେ ପ୍ରଥମେ ସମୁଦ୍ର କୂଳରେ ଅଧିକ ବସତି ଥିଲା । ୧୨୪୬।୪୭ ସାଲର ଛୟଲାବୀ ଦ୍ୱାରା ଏହି କୂଳବର୍ତ୍ତୀ ସ୍ଥାନମାନ ନଷ୍ଟ ହୋଇଯିବାରୁ ବସତି କ୍ରମେ ପଶ୍ଚିମ ଆଡ଼କୁ ଘୁଞ୍ଚି ଆସୁଅଛି ।

୨୦. ପୁରାଣାନୁସାରେ ବାଣରାଜା ଶୈବ ଥିଲେ । ସେ ପ୍ରଥମେ ଶିବଙ୍କ ଦ୍ୱାରୀ କାର୍ଯ୍ୟ କରୁଥିଲେ । ସେ ସମୁଦ୍ରଠାରୁ ଯେଉଁ ଭୂମିଖଣ୍ଡ ପାଇଥିଲେ ତାକୁ ସୀମାବଦ୍ଧ କରିବା ସକାଶେ ଅଧିଷ୍ଠାତା ଦେବ ସ୍ୱରୂପ ତାହାର ଚାରିକୋଣରେ ଚାରିଗୋଟି ଶିବଲିଙ୍ଗ ସ୍ଥାପନ କରିଥିଲେ ଯଥା :- ବାଣେଶ୍ୱର, ଝାଡ଼େଶ୍ୱର, ନକୁଳେଶ୍ୱର, ମଣିନାଗେଶ୍ୱର । ଏ ସମସ୍ତ ଦେବତା ବର୍ତ୍ତମାନ ଅଛନ୍ତି ।

୨୧. ବାଣରାଜା ନଗର ରକ୍ଷା ସକାଶେ ଯେଉଁ ଗଡ଼ ନିର୍ମାଣ କରିଥିବାର ପ୍ରବାଦ ପ୍ରଚଳିତ, ଅବଧି ତାହାର ଚିହ୍ନ ଦେଖାଯାଏ । ତାଙ୍କ କନ୍ୟା ଉଷାଙ୍କ ନାମରୁ ସେହି ଗଡ଼ରନାମ 'ଉଷାମେଢ଼' ହୋଇଥିଲା । ଉଷାକୁ ହରଣ କରିବା ସକାଶ ଶ୍ରୀକୃଷ୍ଣଙ୍କ ପୁତ୍ର ଅନିରୁଦ୍ଧ ସେହି ଦୁର୍ଗ ଆକ୍ରମଣ କରିଥିଲେ ଏବଂ ଗଡ଼ର ଦକ୍ଷିଣ ପାର୍ଶ୍ୱରେ ଯୁଦ୍ଧ ହୋଇ ଅନେକ ରକ୍ତପାତ ହୋଇଥିଲା । ଯୁଦ୍ଧ ସ୍ଥାନର ବର୍ତ୍ତମାନ ନାମ ସୁନହଟ, ଏହା ଶୋଣିତର ଅପଭ୍ରଂଶ ବୋଲି କଥିତ । ମାତ୍ର ପୁରାଣାଦିରେ ବାଣଙ୍କ ରାଜଧାନୀର ନାମ ଶୋଣିତପୁର ବୋଲି ଅଭିହିତ । ଆମ୍ଭେ ବୋଧକରୁ 'ଶୋଣିତପୁର'ରୁ 'ସୁନହଟ' ହୋଇଅଛି । ଦୁର୍ଗର ପାର୍ଶ୍ୱସ୍ଥ ଖାଇ ଓ ଗଡ଼ ଅଭ୍ୟନ୍ତରସ୍ଥ ଏକ ପୁଷ୍କରିଣୀ ବର୍ତ୍ତମାନ ନିଦର୍ଶନ ସ୍ୱରୂପ ଅଛି । ଏହି ପୁଷ୍କରିଣୀର ଉତ୍ତର ଆଡ଼ିରେ ବର୍ତ୍ତମାନ ମୁସଲମାନମାନଙ୍କର ଗୋଟିଏ ମଜିଦ ନିର୍ମିତ ହୋଇଅଛି ।

୨୨. ବ୍ରଜାନନ୍ଦ ଦାସ ନିମକି(ମାହାଲ)ର ଦେବାନ ଥିଲେ, ସେ ଜାତିରେ କାୟସ୍ଥ ଥିବାର କଥିତ । ତାଙ୍କ ପ୍ରକାଣ୍ଡ ଅଟ୍ଟାଳିକାର ଭଗ୍ନାବଶେଷ ବର୍ତ୍ତମାନ ଅଛି ।

୨୩. ରାଧାଶ୍ୟାମ ଦାସ - କଲେକ୍‌ଟରିର ସେରସ୍ତାଦାର ଥିଲେ, ପରେ ବନ୍ଦୋବସ୍ତର ଡିପୋଟି ହୋଇଥିଲେ । ତାଙ୍କର ସୁବିଶାଳ ଅଟ୍ଟାଳିକା ଓ ସଦାବ୍ରତ ଅବଧି ବର୍ତ୍ତମାନ । ତାଙ୍କର କନିଷ୍ଠ ପୁତ୍ର ରାଜନାରାୟଣ ଦାସ (ଡାକନାମ ରାଜାରାମ) ଏକ ବଗିଚା (ଚନ୍ଦନ ବଗିଚା) ଓ ତହିଁରେ ଏକ ସୁନ୍ଦର ଅଟ୍ଟାଳିକା (ଚନ୍ଦନ ମହଲ) ନିର୍ମାଣ କରି ଯାଇଅଛନ୍ତି ।

୨୪. ସମ୍ରାଟ ଆରଂଜେବ ପିତୃହତ୍ୟାର ପ୍ରାୟଶ୍ଚିତ୍ତ ସକାଶ ସ୍ଥାନେସ୍ଥାନେ ଜୁମାମଜିଦ ଓ କଦମ ରସୁଲ ନିର୍ମାଣ କରାଇଥିଲେ । ତନ୍ମଧ୍ୟରେ ବାଲେଶ୍ୱରର କଦମରସୁଲ ଗୋଟିଏ । (ପ୍ୟାରୀବାବୁ କୃତ ଓଡ଼ିଶା ଇତିହାସ) ।

୨୫. ମହାରାଷ୍ଟ୍ର ସେନାପତି ଭାସ୍କର ପଣ୍ଡିତଙ୍କ ସହକାରୀ ସେନାନୀ ମୋସ୍ତାଫାଖାଁଙ୍କ ବାଲେଶ୍ୱରରେ ମୃତ୍ୟୁ ହେବାରୁ ତାଙ୍କ କବର କଦମରସୁଲଙ୍କ ଆସ୍ତାନ ପାର୍ଶ୍ୱରେ ଦିଆ ହୋଇଅଛି । ଅବଧି ସେ କବର ଅଛି ।

୨୬. କିଲ୍ଲା ପୁଷ୍କରିଣୀ ଓଡ଼ିଶାର ମୋଗଲ ଶାସନକର୍ତ୍ତା ତକି ଖାଁଙ୍କ ଦ୍ୱାରା ଖୋଳା ହୋଇଥିବାର କଥିତ । ସେହିଠାରେ ତାଙ୍କର ଆବାସଗୃହ ମଧ ଥିଲା ଏବଂ ଏହି ପୁଷ୍କରିଣୀ ତାଙ୍କର ଅନ୍ଦର ମହଲ ମଧ୍ୟରେ ଥିବାର କଥିତ । ବର୍ତ୍ତମାନ ପୁଷ୍କରିଣୀ ଓ ସ୍ନାନାଗାରର ଭଗ୍ନାବଶେଷ ଅଛି । ପୁଷ୍କରିଣୀ ଆମୂଳ ଗଜଗିରି କରା ହୋଇଅଛି ଏବଂ ସର୍ବଦା ସମାନ ଜଳ ରଖିବା ସକାଶ ପୂର୍ବେ ବଳଙ୍ଗ ନଦୀ ସହିତ ରୀତିମତ ଯୁକ୍ତ ଥିଲା । ବର୍ତ୍ତମାନ ସେହି ଜମିର କେତେକାଂଶରେ କିଶୋରୀମୋହନ (ଉଦ୍ଧବ ଚରଣ ଦାସଙ୍କ ପୁତ୍ର)ଙ୍କ ବଗିଚା ଅବସ୍ଥିତ । ତକି ଖାଁ ବଂଗଳାର ଶାସନକର୍ତ୍ତା ସୁଜାଉଦ୍ଦୀନଙ୍କ ଜାରଜପୁତ୍ର । ସେ ୧୭୨୫ସାଲରେ ଶାସନକର୍ତ୍ତା ହୋଇ ଆସିଥିଲେ ଏବଂ ୧୭୩୪ ସାଲରେ ତାଙ୍କର ଏଠାରେ ମୃତ୍ୟୁ ହୋଇଥିଲା (Hunter's Orissa) ।

୨୭. ଲାଲା ମୋତିରାମ ରାୟ ଦାଦୁ ଜଣେ ମହାରାଷ୍ଟ୍ରୀୟ କର୍ମଚାରୀ, ସେ ସୁହେଲପୁରରେ ମନ୍ଦିର ନିର୍ମାଣ କରି ତହିଁରେ ଲକ୍ଷ୍ମୀନାରାୟଣ ଠାକୁର ପ୍ରତିଷ୍ଠା କରିଥିଲେ ଏବଂ ମୋତିଗଞ୍ଜ ବଜାର ସ୍ଥାପନ କରି ତାହାର ଉପସ୍ୱତ୍ତ୍ୱ ଦେବତା ସେବାରେ ଅର୍ପଣ କରିଥିଲେ । ତାଙ୍କର ବଂଶଧର ଲାଲା କୃଷ୍ଣନାରାୟଣ ରାୟ ଦାଦୁ ବର୍ତ୍ତମାନ କଟକରେ ଅଛନ୍ତି । ବର୍ତ୍ତମାନ ଲକ୍ଷ୍ମୀନାରାୟଣ ଜୀଉ ମୟୂରଭଞ୍ଜ ମହାରାଜାଙ୍କର ।

୨୮. ଭୟା ନିଧିରାମ ଆଢ୍ୟ ଜାତିରେ ବଂଗାଳୀ ସୁବର୍ଣ୍ଣ ବଣିକ । ସେ ମହାରାଷ୍ଟ୍ରୀୟମାନଙ୍କ ଅଧୀନରେ ଜଣେ କର୍ମଚାରୀ ଥିଲେ । ଶ୍ୟାମସୁନ୍ଦର ଜୀଉ ତାଙ୍କର ପ୍ରତିଷ୍ଠିତ । ତାଙ୍କର ବଂଶଧର ନଦିଆଚାନ୍ଦ ଆଢ୍ୟ ବର୍ତ୍ତମାନ ବାଲେଶ୍ୱରରେ ଅଛନ୍ତି ଏବଂ ଶ୍ୟାମସୁନ୍ଦର ଜୀଉ ମଧ ତାଙ୍କ ଅଧିକାରରେ ଅଛି । ଶ୍ୟାମସୁନ୍ଦରଙ୍କର ଶ୍ରୀମନ୍ଦର ମଧୁସୂଦନ କର ନିର୍ମାଣ କରିଥିଲେ । ନାଟମନ୍ଦିର ପଦ୍ମଲୋଚନ ମଣ୍ଡଳ ନିର୍ମାଣ କରି ନିଜ ପିତା ନନ୍ଦକିଶୋର ମଣ୍ଡଳଙ୍କ ନାମରେ ଉତ୍ସର୍ଗ କରିଥିଲେ । ଏହାର ନଅଟି ଚୂଡ଼ା ଅଛି । ମନ୍ଦିର ସଂଲଗ୍ନ ଏକ ପ୍ରସ୍ତର ଫଳକରେ ବଂଗଳା ଅକ୍ଷରରେ ଲିଖିତ ଅଛି । ଯଥା; -

ଶକେ୧ଷ୍ଟରସ ସପ୍ତେନ୍ଦୌ,
ଫାଲ୍‌ଗୁନେ ପୂର୍ଣ୍ଣିମା ତିଥୌ
ହରେ ନାଟ୍ୟାଳୟ ନନ୍ଦ-
କିଶୋରେଣ ପ୍ରତିଷ୍ଠିତଂ ॥

ଏବଂ ବହୁଚୂଡ଼ା ବିଶିଷ୍ଟ ରାହାସ ମନ୍ଦିର ଅଦ୍ୱୈତଚରଣ ଦେଙ୍କ ସ୍ତ୍ରୀ ନିର୍ମାଣ କରି ନିଜ ମୃତ ସ୍ୱାମୀଙ୍କ ନାମରେ ଉତ୍ସର୍ଗ କରି ଅଛନ୍ତି ।

୨୯. ସାଲବେଗ ନାମକ ଜଣେ ପଠାଣ ଶ୍ୟାମସୁନ୍ଦର ଜୀଉଙ୍କର ଅତ୍ୟନ୍ତ ଭକ୍ତ ଥିଲେ । କଥିତ ଅଛି ତାଙ୍କର ପ୍ରତିଦିନ ଦର୍ଶନର ସୁବିଧା ସକାଶ ଶ୍ରୀମନ୍ଦିରରେ ଗୋଟିଏ କ୍ଷୁଦ୍ର ଗବାକ୍ଷ ଅଛି । ଓଡ଼ିଶାର କୌଣସି ମନ୍ଦିରରେ ଗବାକ୍ଷ ନାହିଁ, ମାତ୍ର ଶ୍ୟାମସୁନ୍ଦରଙ୍କ ମନ୍ଦିର ପଶ୍ଚିମ ପାର୍ଶ୍ୱରେ ଗବାକ୍ଷ ଅବଧି ବିଦ୍ୟମାନ । ସାଲବେଗଙ୍କ ସମ୍ବନ୍ଧରେ ଏକ ପଦ୍ୟ ପ୍ରଚଳିତ ଅଛି । ଯଥା : -

"ସତ୍ୟ କି ମୋ ଜୀବ ଥିବ ଯିବ ବୃନ୍ଦାବନ,
ରାଧାକୁଣ୍ଡ, ଶ୍ୟାମକୁଣ୍ଡ କରିବି ଦର୍ଶନ ।
ସାତଶ ପଚାଶ କୋଶ ଦିଗ ଦିଶୁନାହିଁ,
ମୋର ଯିବା ଯାଏଁ ନନ୍ଦିଘୋଷ ଥିବୁ ରହି ।
କହେ ସାଲବେଗ ହୀନ ଜାତିରେ ଯବନ,
ରାଧାକୃଷ୍ଣ ପାଦପଦ୍ମେ ରହୁ ମୋର ମନ ।
ବାପତ ମୋଗଲ ମୋର ମାଆ ତ ବ୍ରାହ୍ମଣୀ,
ଏମନ୍ତ କୁଳରେ ଜନ୍ମ ହିନ୍ଦୁ ନଖାଏ ପାଣି ।"

୩୦. ଶ୍ୟାମାବାଈ ବାଲେଶ୍ୱରର ଜଣେ ବିଖ୍ୟାତ ବେଶ୍ୟା । ସେ କିଛିଦିନ କଲିକତାରେ ରହି ମଧ୍ୟ ଖ୍ୟାତି ଅର୍ଜି ଥିଲେ । ଏପର୍ଯ୍ୟନ୍ତ କଲିକତା ବଡ଼ବଜାରର ଏକ ବେଶ୍ୟା-ପଲ୍ଲୀରେ 'ଶ୍ୟାମାବାଈର ଗଳି' ନାମରେ ଏକ ରାସ୍ତା ଅଛି । ଶ୍ୟାମାବାଈ ବୃଦ୍ଧାବସ୍ଥାରେ ଶ୍ୟାମସୁନ୍ଦରଙ୍କ ଭକ୍ତ ହୋଇ ପ୍ରତିଦିନ ଆରତି ଉତ୍ତାରେ ନାଟ-ମନ୍ଦିରରେ ବସି ଜୟଦେବଙ୍କ 'ଗୀତଗୋବିନ୍ଦ' ଗାଉଥିଲେ । ଏହି ଗାୟନ ଏତେ ମଧୁର ହେଉଥିଲା ଯେ ଅନେକ ଲୋକ ତାହା ଶ୍ରବଣ ସକାଶ ସେଠାରେ ରୁଣ୍ଡ ହେଉଥିଲେ । କଥିତ ଅଛି ଦିନେ ଝଡ଼ିବର୍ଷା ହେତୁ ଶ୍ୟାମା ମନ୍ଦିରକୁ ଯାଇ ନଥିବାରୁ ଶ୍ୟାମସୁନ୍ଦର ଜୀଉ ତାକୁ ସ୍ୱପ୍ନରେ ଦେଖା ଦେଇଥିଲେ ।

୩୧. ବୃନ୍ଦାବନ ନାମକ ଏକ ପଶ୍ଚିମ ଦେଶୀୟ ସନ୍ନ୍ୟାସୀ ଭିନ୍ନ ଭିନ୍ନ ନବାବମାନଙ୍କ ଠାରୁ ଭିନ୍ନଭିନ୍ନ ସ୍ଥାନରେ ଜମି ଦାନ ସ୍ୱରୂପ ଗ୍ରହଣ କରି ସେହି ସମସ୍ତ ସ୍ଥାନରେ ପୁଷ୍କରିଣୀ ଖନନ ଓ ବୃକ୍ଷାଦି ରୋପଣ କରିଥିଲେ । ତନ୍ମଧ୍ୟରେ ବାଲେଶ୍ୱର ନଗରସ୍ଥ ବାଗବୃନ୍ଦାବନ ପୁଷ୍କରିଣୀ ସର୍ବାପେକ୍ଷା ବୃହତ୍ । ଏହାର ଆୟତନ ବର୍ତ୍ତମାନ ୩ମାଣ ଠାରୁ ଅଧିକ । ପୂର୍ବଆଡ଼ି ଦୃଷ୍ଟେ ପ୍ରଥମାବସ୍ଥାରେ ୧୦ମାଣ ଥିବାର ବୋଧହୁଏ । ବୃନ୍ଦାବନଙ୍କ ସଂଗୃହୀତ ସ୍ଥାନମାନ ବର୍ତ୍ତମାନ ଏକ ତାଲୁକ ଭୁକ୍ତ ହୋଇଅଛି, ଏବଂ 'ହରନବାବୀ ପାଟଣାଜାତ ବାଗବୃନ୍ଦାବନ' ନାମରେ ଅଭିହିତ ।

୩୨. ବାଲେଶ୍ୱରରେ ୟୁରୋପୀୟ ମାନଙ୍କ ମଧ୍ୟରେ ପର୍ତ୍ତୁଗୀଜମାନେ ପ୍ରଥମେ ଆସି ଯେଉଁଠାରେ କୋଠି ନିର୍ମାଣ କରି ବାଣିଜ୍ୟ କରୁଥିଲେ ତାହା ଅବଧି ଫିରିଙ୍ଗିପାଟଣା ('ଫିରଙ୍ଗୀ' ପର୍ତ୍ତୁଗୀଜ ମାନଙ୍କର ଦେଶୀୟ ନାମ) ନାମରେ ଅଭିହିତ । ବର୍ତ୍ତମାନ ସେହି ସ୍ଥାନ ଇଂରାଜ ରାଜ୍ୟ ଭୁକ୍ତ । ୧୫୧୪ ସାଲରେ ସେମାନେ ବାଲେଶ୍ୱରକୁ ବାଣିଜ୍ୟ କରିବା ସକାଶେ ପ୍ରଥମେ ଆସିଥିଲେ (Hunter's Orissa) ।

୩୩. ତତ୍ପରେ ଓଲନ୍ଦାଜ ଓ ଦିନାମାରମାନେ ଆସିଥିଲେ । ସେମାନଙ୍କର ନିଦର୍ଶନ ସ୍ୱରୂପ ସେମାନଙ୍କର କୋଠି ଆଦିର ତଳି ଜମି ଓଲନ୍ଦାଜସାହି ଓ ଦିନାମାରଡିଙ୍ଗା ନାମରେ ଅଭିହିତ । ଏହି ସ୍ଥାନମାନ ଇଂରାଜମାନେ ସେମାନଙ୍କଠାରୁ ଖରିଦ କରି ନେଇ ଖାସମାହାଲରେ ସାମିଲ କରି ଅଛନ୍ତି । ଓଲନ୍ଦାଜମାନଙ୍କର ଦୁଇଗୋଟି କବର ଅଛି । ଗୋଟିକରେ ଲିଖିତ ଅଛି Michiell Jans Burggraf Vanseven Hinson Obiit 23 November AD 1696. 'ଓଲେନ୍ଦା ନାଳ' ନାମକ ନାଳ ମଧ୍ୟ ସେମାନଙ୍କର ଖୋଦିତ ବୋଲି କଥିତ । ଫରାସିମାନେ ସର୍ବଶେଷରେ ଆସିଥିଲେ । ଯେଉଁଠାରେ ବାଣିଜ୍ୟାଳୟ ସ୍ଥାପନ କରିଥିଲେ ତାହା ଅବଧି ଫ୍ରାନ୍ସଡିଙ୍ଗା (ଫରାସୀଡିଙ୍ଗା) ନାମରେ ତାଙ୍କ ଅଧିକାରରେ ଅଛି ।

୩୪. ଇଂରାଜମାନେ ୧୬୪୦ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରକୁ ଆସି ପ୍ରଥମେ ବାରବାଟୀଠାରେ କୋଠି ନିର୍ମାଣ କରି ବାଣିଜ୍ୟ ଆରମ୍ଭ କରିଥିଲେ । ଇଂରାଜମାନଙ୍କ ଅଧୀନରେ ଅନେକ (ଧନୀ ମହାଜନଙ୍କର ବାସ ହେତୁ

ବାରବାଟୀକୁ ମହାଜନ ପଡ଼ା କହନ୍ତି) । ପ୍ରଜା ବାସ କରିବାରୁ ସେମାନଙ୍କଠାରୁ କରସଂଗ୍ରହ ଓ ଶାସନ ସକାଶ କାହ୍ନୁ ନାୟକ ନାମକ ଏକ ଗୋପାଳକୁ କଟୁଆଳ ନିଯୁକ୍ତ କରିଥିଲେ । ତାଙ୍କ ବଂଶଧରମାନେ ଏକ ସମୟରେ ସମସ୍ତେ ବାରବାଟୀ ଜମିଦାର ହୋଇଥିଲେ । ବର୍ତ୍ତମାନ ସେ ଜମିଦାରୀ ପର ହସ୍ତଗତ ଏବଂ ତାଙ୍କ ବଂଶଧର ଯଦୁନାଥ କଟୋଆଳ ଅଦ୍ୟ ଭକ୍ଷ୍ୟ ବିବର୍ଜିତ । କଥିତ ଅଛି ଏହି କାହ୍ନୁ ନାୟକ ଇଂରାଜମାନଙ୍କୁ ପ୍ରଥମ ଅବସ୍ଥାରେ ଚୁଡ଼ା ଦହି ଇତ୍ୟାଦି ଦେଇ ଆହାରୀୟ ଯୋଗାଇଥିଲେ । ତାଙ୍କ ସମାଧି ଅବଧି 'କାହ୍ନୁ ନାୟକ ଗୋର' ନାମରେ ପ୍ରସିଦ୍ଧ ।

୩୫. ଇଂରାଜମାନଙ୍କର ବାଣିଜ୍ୟ-କୋଠି ଅବଧି ଅତି ଜୀର୍ଣ୍ଣାବସ୍ଥାରେ ଅବସ୍ଥିତ । ଆନନ୍ଦମୋହନ କର ଏହାକୁ ଖରିଦ କରିନେଇ ସପରିବାରେ ବାସ କରୁଥିଲେ । ବର୍ତ୍ତମାନ ତାଙ୍କର ପୁତ୍ରମାନେ ବାସ କରୁଛନ୍ତି ।

୩୬. ଇଂରାଜମାନଙ୍କ ଅଧୀନରେ ବଂଗଳାରୁ ଅନେକ ଅଶ୍ୱିନୀତନ୍ତୀ ନିରାପଦରେ ରହିବା ସକାଶ ଆସି ବାସ କରିଥିଲେ । ଇଂରେଜମାନେ ତାଙ୍କଠାରୁ ବସ୍ତ୍ରମାନ ଖରିଦ କରି ବିଲାତକୁ ପଠାଉଥିଲେ । ତାଙ୍କ କୃତ 'ସାହାନା' (ଆଧୁନିକ ନୟନକ୍ଲାଟ ପରି ଏକପ୍ରକାର ଲୁଗା) ୟୁରୋପରେ ବିଶେଷ ଆଦୃତ ହେଉଥିଲା । ଏହି ତନ୍ତୀମାନଙ୍କ ମଧ୍ୟରେ ଜଗନ୍ନାଥ ଦାସ ମାନ୍ଦ୍ରାଜ ସହିତ କାରବାର କରି ବିଶେଷ ଧନଶାଳୀ ହୋଇଥିଲେ । ଏହାଙ୍କ ବଂଶଧର ରାଧାଶ୍ୟାମ ବର୍ତ୍ତମାନ ଜୀବିତ ଅଛନ୍ତି । ବୈଷ୍ଣବଚରଣ ଦାସ ଏହି ବଂଶର ଆଦିପୁରୁଷ, ସେ ଇଂରେଜ ଅଧିକାରର ପ୍ରାୟ ୫୦ବର୍ଷ ପୂର୍ବେ ବାଲେଶ୍ୱରକୁ ଆସିଥିଲେ ।

୩୭. ଇଂରାଜମାନଙ୍କ ଓଡ଼ିଶା ଅଧିକାର ପୂର୍ବେ ବାଲେଶ୍ୱରର 'କର' ଉପାଧିକାରୀ ତାମ୍ବୁଲିମାନେ ବିଶେଷ ଧନଶାଳୀ ଓ କ୍ଷମତାଶାଳୀ ହୋଇଥିଲେ । ଇଂରେଜମାନଙ୍କ ପ୍ରଥମ ଅମଳରେ ବାଲେଶ୍ୱରରୁ ବୋଇତ ଦ୍ୱାରା ହାବଡ଼ା-ସାଲିଖାକୁ ଲବଣ ବହନ କରିବା ତାଙ୍କର ବିଶେଷ କାର୍ଯ୍ୟ ଥିଲା । ଏହି ସମୟରେ ସେମାନେ ଭେଡ଼ା ପ୍ରଭୃତି ଜମିଦାରୀ କିଣିଥିଲେ । ଚୈତନ୍ୟ ଚରଣ କର ପ୍ରଥମେ ବାଲେଶ୍ୱରରେ 'ଗେଡ଼ି' ପଇସା ପ୍ରଚଳନ କରିଥିଲେ, ତତ୍ପୂର୍ବେ କୌଡ଼ିର ପ୍ରଚଳନ ଥିଲା । ଅବଧି ସେହି ପଇସାକୁ ଲୋକେ 'ଚୈତନକରୀ ପଇସା' କହନ୍ତି ।

୩୮. ନନ୍ଦକିଶୋର ମଣ୍ଡଳ ବାଲେଶ୍ୱରକୁ ବାଣିଜ୍ୟ କରିବ ସକାଶ ଆସିଥିଲେ । ତାଙ୍କ ପୁତ୍ର ପଦ୍ମଲୋଚନ ମଣ୍ଡଳ ଏଠା କଲେକ୍ଟରୀ ଖଜାଞ୍ଚି ହୋଇ ଓ ବାଣିଜ୍ୟ କରି ଅତିଶୟ ବିଷୟୀ ଲୋକ ହୋଇଥିଲେ ।

୩୯. ଉଦ୍ଧବ ଚରଣ ଦାସ ସ୍ୱନାମଧନ୍ୟ ପୁରୁଷ । କଥିତ ଅଛି ଯେତେବେଳେ ସେ ଘରୁ ତାଙ୍କ ଜେଡ଼ତାପୁଅ ଭାଇଙ୍କ ଦ୍ୱାରା ତାଡ଼ିତ ହୋଇଥିଲେ, ସେତେବେଳେ ତାଙ୍କର ଛଅଅଣା ମାତ୍ର ସମ୍ବଳ ଥିଲା । ସେହି ସମ୍ବଳରୁ ବ୍ୟବସାୟ ଆରମ୍ଭ କରି ସେ କାଳେ ବାଲେଶ୍ୱର ମଧ୍ୟରେ ଜଣେ ପ୍ରଧାନ ଧନୀ ବୋଲି ପରିଗଣିତ ହୋଇଥିଲେ । ସେ ଆଜୀବନ କୌଣସି ମନ୍ଦ ଉପାୟରେ ଅର୍ଥ ଉପାର୍ଜନ କରି ନଥିଲେ । ଧନୀମାନଙ୍କ ମଧ୍ୟରେ ପ୍ରାୟ ଏପରି ଦେଖାଯାଏ ନାହିଁ । ତାଙ୍କର ବାଣିଜ୍ୟ ବୋଇତ ସର୍ବାପେକ୍ଷା ଅଧିକ ଥିଲା । ସେ ନିରହଂକାର ଲୋକ, ସଦାସର୍ବଦା ମୁଣ୍ଡପୋତି ବାଟ ଚାଲୁଥିଲେ ।

୪୦. ରାଜା ଶ୍ୟାମାନନ୍ଦ ଦେଙ୍କ ଆଦିପୁରୁଷ କରଙ୍କର କୁଆଁଇ ହୋଇ ବାଲେଶ୍ୱରକୁ ଆସିଥିଲେ । ଶ୍ୟାମାନନ୍ଦ ୧୮୬୬ ଦୁର୍ଭିକ୍ଷ ସମୟରେ କାଙ୍ଗାଳିମାନଙ୍କୁ ଧାନ, ଚାଉଳ ଇତ୍ୟାଦି ଦାନ କରିବା ହେତୁ ଗଭର୍ଣ୍ଣମେଣ୍ଟ ପ୍ରଥମେ ତାଙ୍କୁ ରାୟ ବାହାଦୁର, ପରେ ରାଜା, ତତ୍‌ପରେ ରାଜା ବାହାଦୁର ଉପାଧି ଦେଇଥିଲେ ।

୪୧. ପୂର୍ବେ (ଆଧୁନିକ 'ବାଲିଘାଟ') ବଳଙ୍ଗର ଘାଟ ଅତ୍ୟନ୍ତ ପଙ୍କିଳ ଥିଲା । ସ୍ନାନ କରିବା ଏବଂ ଘାଟ ପାରିହେବା ଲୋକେ ସେହେତୁ ଅତ୍ୟନ୍ତ କଷ୍ଟ ପାଉଥିଲେ । ଉର୍ଦ୍ଧବ ଚରଣ ବହୁ ବ୍ୟୟରେ ସେଠାରେ ପକାଘାଟ ନିର୍ମାଣ କରି ଏବଂ ପଙ୍କ କାଢ଼ିଦେଇ ବାଲି ପକାଇବାରୁ ତାହାର ନାମ ବାଲିଘାଟ ହୋଇଅଛି । ଘାଟର ଦଲାଣ କାନ୍ଥରେ ପ୍ରସ୍ତର ଫଳକରେ ବଂଗଳା ଅକ୍ଷରରେ ଖୋଦିତ ଅଛି -

ଉର୍ଦ୍ଧବ ଚରଣ ଚିତ୍ତେ ଚିନ୍ତାମଣି,
ଶକେ ସପ୍ତରସ ସିନ୍ଧୁ ଇନ୍ଦୁ କୁମ୍ଭେ ଗନି ।
ସୀତାଷ୍ଟମୀ ଗୁରୁବାରେ ହୟେ ଇଷ୍ଟ ନିଷ୍ଠା,
ସୋପାନ ମନ୍ଦିର ଦାନ କରିଲ ପ୍ରତିଷ୍ଠା ।

ଏବଂ ପ୍ରତି ଧାପରେ ସେହିପରି ପ୍ରସ୍ତର ଫଳକରେ ନିଜନାମ ଓ ତାହା ତଳେ ୧୨୫୨ ସାଲ ଖୋଦିତ ହୋଇଅଛି । ଉଦ୍ଦେଶ୍ୟ ସମସ୍ତଙ୍କର ପଦଧୂଳି ତାଙ୍କ

ଶିରୋପରେ ପଡ଼ିବ । ପୂର୍ବେ ୨୨ଗୋଟି ପାହୁଚ ଥିଲା । ବର୍ତ୍ତମାନ ତନ୍ମଧ୍ୟରୁ ୮।୧୦ଟି ପୋତି ଯାଇଅଛି ।

୪୨. ଫାଦାର 'ସେପାର୍ଟ' ନାମକ ଜଣେ 'ବେଲଜିୟମ' ବାସୀ ରୋମାନ କ୍ୟାଥଲିକ ପାଦରୀ ଏହି ଗିରିଜାର ଭିତ୍ତି ପତନ କରିଥିଲେ ୧୮୭୭ ସାଲରେ । ଏହାପରି ସୁନ୍ଦର ଓ ପ୍ରକାଣ୍ଡ ଘର ସହର ମଧ୍ୟରେ ନାହିଁ ।

୪୩. ଇଂରାଜମାନଙ୍କର ପ୍ରଥମ କଚେରି ଘର ବାଗବୃନ୍ଦାବନ ପୁଷ୍କରିଣୀ ନିକଟବର୍ତ୍ତୀ ଏକ ପଡ଼ିଆରେ ଥିଲା । ଏହି ପଡ଼ିଆର ନାମ ରଘୁନାଥପୁର ପାଟଣା ମାତ୍ର ଉକ୍ତ କୋଠି ବଜ୍ରାଘାତରେ ନଷ୍ଟ ହେଲାପରେ 'ପୋଡ଼ାବଂଗଳା' ନାମରେ ଖ୍ୟାତ । ପୂର୍ବ କୋଠି ହତା ଫାଟକର ଦୁଇଟି ସ୍ତମ୍ଭ ବର୍ତ୍ତମାନ ଅଛି ।

୪୪. ୧୭୫୧ ସାଲରେ ଆଲିବର୍ଦ୍ଦି ଓଡ଼ିଶା ମହାରାଷ୍ଟ୍ରୀୟମାନଙ୍କୁ ଛାଡ଼ିଦେଲେ । ସେହି ସମୟରେ ମରହଟ୍ଟା ସେନାପତି ଭାସ୍କର ପଣ୍ଡିତ ସସୈନ୍ୟରେ ଆଧୁନିକ ଭାସ୍କରଗଞ୍ଜଠାରେ କଟକ ସ୍ଥାପନ କରିଥିଲେ ଓ ସୈନ୍ୟମାନଙ୍କର ସୁବିଧା ସକାଶ ସେହିଠାରେ ଏକ ଗଞ୍ଜ ବସାଇଥିଲେ । ସେହି ସ୍ଥାନ ତାଙ୍କର ନାମାନୁସାରେ 'ଭାସ୍କରଗଞ୍ଜ' ନାମରେ ଅଭିହିତ । ସେ ବାଲେଶ୍ୱରର ଝାଡ଼େଶ୍ୱର ଜୀଉଙ୍କ ମନ୍ଦିର ନିର୍ମାଣ କରାଇ ଭାସ୍କରଗଞ୍ଜକୁ ଦେବ ସେବାରେ ଖଞ୍ଜି ଦେଇଥିଲେ ।

୪୫. 'ଜନ୍ ବିଚର' ନାମକ ଜଣେ ଆମେରିକାନ ପାଦରୀ ଏହିଠାରେ ଜଗନ୍ନାଥ ଯାତ୍ରୀଙ୍କ ସୁବିଧା ସକାଶ ଏକ ବଜାର ଓ ଚଟୀ ସ୍ଥାପନ କରିଥିଲେ । ଅବଧି ସେହି ବଜାର ଓ ଚଟୀ 'ବିଚରଗଞ୍ଜ' ନାମରେ ଖ୍ୟାତ ।

୪୬. ପୂର୍ବେ ବାଲେଶ୍ୱର ନଗର ଏହିଠାରେ ଥିଲା । ମୋତିରାମ ଦାଦୁଙ୍କ କର୍ତ୍ତୃକ 'ମୋତିଗଞ୍ଜ ବଜାର' ସ୍ଥାପିତ ହେଲା ପରେ ସହର କ୍ରମେ ପଶ୍ଚିମ ଆଡ଼କୁ ଘୁଞ୍ଚି ଆସିଅଛି । ସେହି ହେତୁ ବର୍ତ୍ତମାନ ଏହା ପୁରୁଣା ବାଲେଶ୍ୱର ନାମରେ ଅଭିହିତ । ଏଠାରେ ବାଣ ରାଜାଙ୍କ ସ୍ଥାପିତ ବାଣେଶ୍ୱର ଅଛନ୍ତି । ଏହାଙ୍କ ଆଧୁନିକ ମନ୍ଦିର ମଧୁସୂଦନ କରଙ୍କ ଦ୍ୱାରା ନିର୍ମିତ ।

୪୭. ଫରାସୀଡିଙ୍ଗାରେ ଆଜିପର୍ଯ୍ୟନ୍ତ ପ୍ରତିବର୍ଷ ଉଡ଼ାପର୍ବ ହୋଇଥାଏ । ଏହି ସମୟରେ ପୂର୍ବ ରୀତି ଅନୁସାରେ ଅନେକ ଲୋକ ପିଠିଫୋଡ଼ି ଉଡ଼ନ୍ତି । ଏଠାରେ ଇଂରେଜଙ୍କର କୌଣସି ଅଧିକାର ନାହିଁ ।

୪୮. ପ୍ରବାଦ, ପାଣ୍ଡବମାନେ ବିରାଟରେ ପ୍ରବେଶ କରିବା ପୂର୍ବେ ଏଠାରେ ସ୍ନାନ କରିଥିଲେ । ସେହିହେତୁ ଏ ସ୍ଥାନର ନାମ ପାଣ୍ଡବଘାଟ । ବାରୁଣୀ ଦିନ ଏଠାରେ ମେଳା ହୁଏ ।

୪୯. ଚାନ୍ଦିପୁରଠାରେ ପୂର୍ବେ ଅନେକଗୁଡ଼ିଏ ବଂଗଳା ଥିଲା । ଗ୍ରୀଷ୍ମକାଳରେ ସାହେବମାନେ ସେଠାରେ ଯାଇ ବାସ କରୁଥିଲେ । ବର୍ତ୍ତମାନ ଏହି ସ୍ଥାନ କମାଣର ଗୋଳାଗୋଳି ପରୀକ୍ଷାର ସ୍ଥାନରେ ପରିଣତ ହୋଇଛି ।

୫୦. ଏଠାରେ ବଳରାମ ଭୂୟାଁ ନାମକ ଏକ ସମୃଦ୍ଧିଶାଳୀ ଜମିଦାରଙ୍କ ଗଡ଼ ଥିଲା ଓ ତାଙ୍କ ନାମ ଅନୁସାରେ ସ୍ଥାନର ନାମ ବଳରାମଗଡ଼ି ହୋଇଅଛି । ୧୨୪୬-୪୭ ଛୟାଲବିରେ ଏହି ସ୍ଥାନ ଅନ୍ୟାନ୍ୟ ସମୁଦ୍ର ଉପକୂଳବର୍ତ୍ତୀ ସ୍ଥାନପରି ଧୋଇଯାଇ ବର୍ତ୍ତମାନ ଅରଣ୍ୟରେ ପରିଣତ ହୋଇଅଛି । ଶିବାଜୀ ଦିଲ୍ଲୀରୁ ସ୍ୱଦେଶକୁ ଗମନ କାଳେ ସମୁଦ୍ର ଉପକୂଳ ହୋଇ ଗମନ କରିଥିଲେ । ପ୍ରବାଦ ସେ ସେହି ସମୟରେ ଏଠାକୁ ଆସିଥିଲେ ।

୫୧. କେଶରୀ ବଂଶୀୟ ରାଜାମାନଙ୍କ ସ୍ଥାପିତ ଶୈବଧର୍ମ ବିନାଶ ସକାଶ ଗଜପତି ବଂଶୀୟ ରାଜାମାନେ ସ୍ଥାନେସ୍ଥାନେ ବିଷ୍ଣୁମନ୍ଦିର ସ୍ଥାପନ କରିଥିଲେ । ସେହି ସମସ୍ତ ମନ୍ଦିର ମଧ୍ୟରେ ଗୋପୀନାଥ ଜୀଉଙ୍କ ମନ୍ଦିର ଗୋଟିଏ । ପୂର୍ବ ମନ୍ଦିର ଅତି ଜୀର୍ଣ୍ଣ ହୋଇଯିବାରୁ ରେମୁଣା ବ୍ରାହ୍ମଣୀୟା ନିବାସୀ ଉର୍ଦ୍ଧ୍ୱବ ଚରଣ ପୁଥାଳ ନାମକ ଜଣେ ମହାଜନ ସେହି ମନ୍ଦରର ଜୀର୍ଣ୍ଣସଂସ୍କାର କରି ଦେଇଅଛନ୍ତି । ଲାଲମୋହନ ଦାସ (ଉର୍ଦ୍ଧ୍ୱବ ଚରଣ ଦାସଙ୍କ ୩ୟପୁତ୍ର) ଏଠାରେ ଅତିଥିଶାଳା ନିର୍ମାଣ କରିଥିଲେ ।

୫୨. ଶ୍ରୀଚୈତନ୍ୟ ଓଡ଼ିଶାକୁ ଧର୍ମ ପ୍ରଚାରାର୍ଥେ ଆସି ଜଳେଶ୍ୱର ଠାରୁ ଗୋପୀନାଥ ଦର୍ଶନ ସକାଶ ରେମୁଣାକୁ ଆସିଥିଲେ । 'ଆଇଲା ରେମୁଣା ଗ୍ରାମେ ଗୌରାଙ୍ଗ ଶ୍ରହରି' ('ଚୈତନ୍ୟ ଭାଗବତ'- ଅନ୍ତଲୀଳା) ।

ରେମୁଣାରେ ବଢ଼େଇ, କଂସାରୀ ପ୍ରଭୃତି ଅନେକ ଶିଳ୍ପୀଙ୍କ ବାସ । ସେମାନଙ୍କର କଲିକତାରେ କାରବାର ।

୫୩. ରେମୁଣା ଗୋପୀନାଥ ମନ୍ଦିର ସନ୍ନିକଟରେ ଗଡ଼ଗଡ଼େଶ୍ୱରଙ୍କ ମନ୍ଦିର କେଶରୀ ବଂଶୀୟ ରାଜାମାନଙ୍କ ଦ୍ୱାରା ପ୍ରତିଷ୍ଠିତ । ବୌଦ୍ଧଧର୍ମ ବିନାଶ ଏହାର

ଉଦ୍ଦେଶ୍ୟ । ପ୍ରାଚୀନ ଦେଉଳ ଭାଂଗିଯିବାରୁ ରେମୁଣା ନିବାସୀ ଡେପୁଟୀ କୃଷ୍ଣକାନ୍ତ ମିତ୍ର ପୁନରାୟ ସେହି ମନ୍ଦିର ନିର୍ମାଣ କରାଇଥିଲେ ।

୫୪. ନୀଳଗିରି ପର୍ବତ ଶ୍ରେଣୀର ପାଦଦେଶରେ ଏହି ଗ୍ରାମ ଅବସ୍ଥିତ । ଏଠାରେ ବାପଟିଷ୍ଟ ଖ୍ରୀଷ୍ଟାନମାନଙ୍କର ବାସ । ବାଲେଶ୍ୱରର ଏକ ପୂର୍ବ କଲେକ୍ଟର ଏଲେନ ସାହେବ ଏଠାରେ ଶିକାର କରିବା ଓ ପାର୍ବତୀୟ ବାୟୁ ସେବନ ସକାଶେ ଗୋଟିଏ କୁଠି ନିର୍ମାଣ ଓ ଏହି ସ୍ଥାନ ପର୍ଯ୍ୟନ୍ତ ଏକ ପକା ସଡ଼କ ପ୍ରସ୍ତୁତ କରାଇଥିଲେ । ସେହି କୁଠି ବର୍ତ୍ତମାନ ବାପ୍‌ଟିଷ୍ଟ ଖ୍ରୀଷ୍ଟାନ ମାନଙ୍କର ଅଧୀନରେ ଅଛି ।

୫୫. ଗଡ଼ପଦାର ଜମିଦାର ଭୂୟାଁବଂଶ ପୂର୍ବେ ଦ୍ରାବିଡ଼ୀ ବ୍ରାହ୍ମଣ ଥିଲେ, ବର୍ତ୍ତମାନ ମୁସଲମାନ । ପଞ୍ଚଦଶ ଶତାବ୍ଦୀର ଶେଷଭାଗରେ ଓଡ଼ିଶାର ମହାରାଜା ପୁରୁଷୋତ୍ତମ ଦେବଙ୍କ ସମୟରେ, ଦ୍ରାବିଡ଼ ଦେଶୀୟ ପଣ୍ଡିତ ପୋତେଶ୍ୱର ଭଟ୍ଟ ସପରିବାରେ ଓଡ଼ିଶାକୁ ଆସି ପାଣ୍ଡିତ୍ୟ ହେତୁ ମହାରାଜାଙ୍କ ଠାରେ ପରିଚିତ ହୋଇଥିଲେ । ମହାରାଜାଙ୍କ ଚନ୍ଦ୍ରଗ୍ରହଣ ଉପଲକ୍ଷ୍ୟରେ ଗଂଗାସ୍ନାନାର୍ଥ ତ୍ରିବେଣୀ ଗମନ ସମୟେ ପୋତେଶ୍ୱର ସଂଗରେ ଯାଇଥିଲେ । ଗ୍ରହଣ ସମୟରେ ମହାରାଜ ବ୍ରାହ୍ମଣମାନଙ୍କୁ ଅନେକ ଭୂମିଦାନ କରିଥିଲେ । ପୋତେଶ୍ୱର ସେହି ସମୟରେ 'ଉଦୟପୁର ଶାସନ' (ଆଧୁନିକ ଅପଭ୍ରଂଶ 'ଉଡ଼ିଆ ଶାସନ') ପ୍ରାପ୍ତ ହୋଇଥିଲେ । ଏହି ସ୍ଥାନ ଗଡ଼ପଦାର ଅନ୍ତର୍ଗତ । ତାଙ୍କର ଅଷ୍ଟମପୁରୁଷ ସର୍ବେଶ୍ୱର ଭଟ୍ଟ ମୟୂରଭଞ୍ଜର ତାତ୍କାଳୀନ ରାଜା ଦାମୋଦର ଭଞ୍ଜଙ୍କ ସହିତ ବିବାଦରେ ସର୍ବସ୍ୱାନ୍ତ ହୋଇ ଦିଲ୍ଲୀ ସମ୍ରାଟ ଆଉରଙ୍ଗଜେବଙ୍କ ଆଶ୍ରୟ ନେବାରୁ ସମ୍ରାଟ ଆଦେଶରେ ବଂଗଳାର ନବାବ ମୟୂରଭଞ୍ଜ ରାଜାଙ୍କୁ ଯୁଦ୍ଧରେ ପରାଭୂତ କରି ସର୍ବେଶ୍ୱରଙ୍କୁ ତାଙ୍କ ଭୂସଂପତ୍ତିର ଫେରାଇଦେବା ସମୟେ ଯୁଦ୍ଧର ବ୍ୟୟ ମାଗିଲାରୁ ସେ ପୁନର୍ବାର ଦିଲ୍ଲୀ ଯାଇଥିଲେ । ସମ୍ରାଟ ଟଙ୍କା ବଦଳରେ ତାଙ୍କୁ ପଠାଣ ହେବାକୁ କହିବାରୁ ସର୍ବେଶ୍ୱର ବିଷୟ ଲୋଭରେ ଧର୍ମ ତ୍ୟାଗ କରିଥିଲେ । ଅବଧି ଗଡ଼ପଦା ଭୂୟାଁଙ୍କ ଅନେକ ଦେବୋତ୍ତର ଜମି ଓ ଦେବସେବା ଅଛି । ପୋତେଶ୍ୱର ଭଟ୍ଟଙ୍କୁ ଭୂମିଦାନ ବିଷୟକ ସନନ୍ଦ ଏକ ତାମ୍ରଫଳକରେ ଖୋଦିତ । ବର୍ତ୍ତମାନ ତାହା ଭୂୟାଁ ଅବଦୁସ୍ ସୋଭାନ୍‌ଙ୍କଠାରେ ଅଛି । ତହିଁର ଏକ ପୃଷ୍ଠରେ

"ଶ୍ରୀ ଜୟଦୁର୍ଗାୟୈ ନମଃ । ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣଟୋତ୍କଳ ବର୍ଗେଶ୍ୱର ଶ୍ରୀ ପୁରୁଷୋତ୍ତମଦେବ ମହାରାଜାଙ୍କର ପୋତେଶ୍ୱର ଭଟ୍ଟଙ୍କୁ ଦାନ ଶାସନ ପଟ୍ଟା ୨୫ଅଙ୍କ ମେଷମାସ, ଦ୍ୱିତୋୟାନ ସୋମବାର ଗ୍ରହଣ କଲେ ଗଂଗା ଗର୍ଭେ ପୁରୁଷୋତ୍ତମପୁର ଶାସନ-ଭୂମି ଚତୁର୍ଦ୍ଦଶ ଅଷ୍ଟୋତ୍ତର (୧୪୦୮) ବାଟୀ ଦାନ ଦେଲୁ । ଏ ଭୂମି ଯାବତ୍‌ଚନ୍ଦ୍ରାର୍କେ ପୁତ୍ର ପୌତ୍ରାଦି ପୁରୁଷାନୁକ୍ରମେ ଭୋଗ କରୁଥିବ । ଜଳରାମ ନିକ୍ଷେପ ସହିତ ଭୂମି ଦେଲୁ ।" ଅପରପୃଷ୍ଠରେ "ଯାବତ୍ ଚନ୍ଦ୍ରଶ୍ଚ ସୂର୍ଯ୍ୟଶ୍ଚ ଯାବତ୍ ତିଷ୍ଠତି ମେଦିନୀ, ତବାଦତ୍ତ୍ୱା ମୟା ଯେଷାଂ, ଶସ୍ୟ ଯୁକ୍ତା ବସୁନ୍ଧରା, ସ୍ୱ ଦତ୍ତାଂ ପରାଂ ଦତ୍ତାଂ ବା, ବ୍ରାହ୍ମଣା ବୃତ୍ତିଂ ହରତ୍‌ଯଃ, ଷଷ୍ଟୀବର୍ଷା ସହସ୍ରାଣି ବିଷ୍ଠାୟାଂ ଜାୟତେ କୃମିଃ ।

ଶ୍ରୀ ମଦନ ଗୋପାଳ ସରଣଂ ମମାମ

ଶଙ୍ଖ ଚକ୍ର ଗଦା ପଦ୍ମ (ଚିହ୍ନ ଅଙ୍କିତ)

୫୬. ପୁରୁଷୋତ୍ତମଦେବ ଚନ୍ଦ୍ରଗ୍ରହଣ ଉପଲକ୍ଷରେ ଗଂଗାସ୍ନାନାର୍ଥେ ଯିବା ସମୟରେ ତାଙ୍କ ମନ୍ତ୍ରୀ ବିଦ୍ୟାଧରଙ୍କୁ ସ୍ଥାନେସ୍ଥାନେ ପୁଷ୍କରିଣୀ ଖନନ ସକାଶ ପୂର୍ବାହ୍ନେ ପଠାଇଥିଲେ । ସେ ତତ୍‌କାଳୀନ ଜଗନ୍ନାଥ ବାଟର ସ୍ଥାନେସ୍ଥାନେ ବୃହତ୍ ପୁଷ୍କରିଣୀମାନ ଖନନ କରି ନିଜ ନାମ ଅନୁସାର ସେମାନଙ୍କର ନାମକରଣ କରିଥିଲେ । ସେହି ପୋଖରୀମାନଙ୍କ ମଧ୍ୟରେ କଥିତ ପୁଷ୍କରିଣୀ ଏକ ଗୋଟି ।

୫୭. ଜଳେଶ୍ୱର ପୂର୍ବକାଳରେ ଅତି ପ୍ରସିଦ୍ଧ ସ୍ଥାନ ଥିଲା । ବଂଗଳାରୁ ବିତାଡ଼ିତ ପଠାଣମାନେ ଏଠାରେ ଆତ୍ମରକ୍ଷା ସକାଶ ଏକ ଦୁର୍ଗ ନିର୍ମାଣ କରିଥିଲେ । ବର୍ତ୍ତମାନ ତାହାର ଚିହ୍ନ ସ୍ୱରୂପ ଏକ ମୃତ୍ତିକା ସ୍ତୂପ ଅଛି, ତାହା ଗଡ଼ ଅଭ୍ୟନ୍ତରରେ ଥିବାର ଓ ତାହା ଉପରେ ତୋପ ରକ୍ଷିତ ହେଉଥିବାର କଥିତ । କେତେକ ଦିନ ପୂର୍ବେ ସୁବର୍ଣ୍ଣରେଖା ତଟରେ ଏକ ମଜିଦର ଭଗ୍ନାବଶେଷ ମଧ୍ୟ ଥିଲା । ଇଂରାଜମାନେ ପ୍ରଥମ ଅଧିକାର ପରେ ଏଠାରେ ନୀଳଚାଷ ସକାଶ ଏକ କୋଠି ନିର୍ମାଣ କରିଥିଲେ । ତାହା ଅନେକ ଦିନ ଭଂଗାବସ୍ଥାରେ ପତିତ ଥିଲା, ବର୍ତ୍ତମାନ କେତେକ ଚାଉଳିଆ ମହାଜନ ତାହା ଉପରେ ଛପର ଦେଇ ଚାଉଳ ଗୋଦାମ କରିଅଛନ୍ତି । ୧୬୧୧ଖ୍ରୀ.ରେ ପଠାଣ ନୃପତି ଓସମାନ ମୋଗଲ ସେନାପତି ସୋଜାତଙ୍କୁ ପରାଭୂତ କରିଥିଲେ । ୧୫୯୧ ଖ୍ରୀ.ରେ ମାନସିଂହ ଏହିଠାରେ କତଲୁ ଖାଁଙ୍କୁ ପରାଭୂତ କରିଥିଲେ ।

୫୮. ୧୫୮୨ ଖ୍ରୀ.ରେ ଆକବରଙ୍କ ରାଜସ୍ୱ ସଚିବ ମହାରାଜ ତୋଡରମଲ୍ଲ ୧୨ଦସ୍ତି ପଦିକାରେ ଓଡ଼ିଶା ଜରୀବ କରି ରାଜସ୍ୱ ନିରୂପଣ କରିଥିଲେ । ଗଡ଼ଜାତ ଓ ମୋଗଲବନ୍ଦ ବିଭାଜନ ତାଙ୍କର ।

୫୯. ତୋଡ଼ରମଲ୍ଲଙ୍କ ସମୟରେ ରାମଚନ୍ଦ୍ର ଖାଁ 'ଓହେଦାର' ପଦ ଲଭି, ଓଡ଼ିଶାର ରାଜସ୍ୱ ସଂଗ୍ରହ ସକାଶ ଆସି ଜଳେଶ୍ୱରରେ ବାସ ନିରୂପଣ କରିଥିଲେ । ମେଦିନୀପୁର ଅନ୍ତର୍ଗତ ଜଖପୁର ତାଙ୍କ ଆଦି ବାସସ୍ଥାନ । ସେ ଲକ୍ଷଣନାଥ ରାୟ ମହାଶୟ ବଂଶର ଆଦିପୁରୁଷ । ୧୫୮୯ରେ ମାନସିଂହଙ୍କ ସମୟରେ ସେ ସଦର କାନନ୍‌ଗୋ ପଦ ପାଇଥିଲେ ।

୬୦. ରାମଚନ୍ଦ୍ର ଶାକ୍ତ ଧର୍ମାବଲମ୍ବୀ ଥିଲେ, ସୁତରାଂ ବୈଷ୍ଣବମାନଙ୍କୁ ଅତ୍ୟନ୍ତ ଘୃଣା କରୁଥିଲେ । ସେ ସମୟରେ ନିତ୍ୟାନନ୍ଦ ଗୋସ୍ୱାମୀ ଜଳେଶ୍ୱରରେ ପହଞ୍ଚି ବିଶ୍ରାମାର୍ଥ ରାମଚନ୍ଦ୍ରଙ୍କ ଚଣ୍ଡୀ-ମଣ୍ଡପରେ ବସିବାରୁ ରାମଚନ୍ଦ୍ର ସେହି ସ୍ଥାନର ମାଟି ଉଠାଇ ପକାଇ ଦେଇଥିଲେ ।

୬୧. ଓଡ଼ିଶାର ରାଜା ପ୍ରତାପରୁଦ୍ର ଦେବଙ୍କ ସମୟରେ ଶ୍ରୀ ଚୈତନ୍ୟ ଓଡ଼ିଶାକୁ ପ୍ରଚାରାର୍ଥେ ଆସିଥିଲେ । ପ୍ରତାପରୁଦ୍ର ୧୫୦୪ ଠାରୁ ୧୫୩୨ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଚୈତନ୍ୟ ନୀଳାଚଳ ଗମନ କାଳୀନ ଅନ୍ୟାନ୍ୟ ସ୍ଥାନପରି ଜଳେଶ୍ୱରରେ ମଧ୍ୟ ବିଶ୍ରାମ କରିଥିଲେ ଏବଂ ସେଠାରେ ରାମଚନ୍ଦ୍ରଙ୍କ ସାହାଯ୍ୟ ପାଇଥିଲେ ।

"ସ୍ନାନ କରିଲେନ ପ୍ରଭୁ ବୈଷ୍ଣବ ସକଲ,
ସୁବର୍ଣ୍ଣରେଖାର ଜଲେ ପରମ ନିର୍ମଲ ।
x x x
ମୁହୂର୍ତ୍ତେକେ ଗେଲା ପ୍ରଭୁ ଜଲେଶ୍ୱର ଗ୍ରାମ
x x x
ସେହି ପ୍ରେମ ଅଧିକାରୀ ରାମଚନ୍ଦ୍ର ଖାଁନ,
ଯଦ୍ୟପି ବିଷୟୀ ତବୁ ମହାଭାଗ୍ୟବାନ ।
x x x
ଜିଜ୍ଞାସିଲ ରାମଚନ୍ଦ୍ର ଖାଁନେରେ କେ ତୁମି ?
x x x

ସମ୍ଭ୍ରମ କରିୟା ଦଣ୍ଡବତ କରଯୋଡ଼,
ବୋଲେ ପ୍ରଭୁ ଦାସ ଅନୁଦାସ ମୁଇଁ ତୋର ।
ଅବଶେଷେ ସର୍ବଲୋକ ଲାଗିଲ କହିତେ,
ଏହି ଅଧିକାରୀ ପ୍ରଭୁ ଦକ୍ଷିଣ ରାଜ୍ୟେତେ ।
ପ୍ରଭୁ ବଲେ ତୁମି ଅଧିକାରୀ ବଡ଼ ଭାଲ,
ନୀଲାଚଲେ ଆମି ଯାଇ କିମତେ ସକାଲ ।

x x x

ରାମଚନ୍ଦ୍ର ଖାଁନ ବୋଲେ ଶୁନ ମହାଶୟ,
ଯେ ଆଜ୍ଞା ତୋମାର ସେଇ କର୍ତ୍ତବ୍ୟ ନିଶ୍ଚୟ ।
ତବେ ପ୍ରଭୁ ହଇଆଛେ ବିଷମ ସମୟ,
ସେ ଦେଶେ ଏଦେଶେ କେହ ପଥ ନାହି ବୟ ।
ରାଜାରା ତ୍ରିଶୂଳ ପୁତିୟାଛେ ସର୍ବସ୍ଥାନେ,
ପଥିକ ପାଇଲେ ପ୍ରାୟ ବଧିବେକ ପ୍ରାଣେ ।

('ଚୈତନ୍ୟ ଭାଗବତ'- ଅନ୍ତ ଖଣ୍ଡ)

୬୨. ୧୫୭୪ ଖ୍ରୀ. ତୁଡ଼କିୟାର ଯୁଦ୍ଧ (Hunter's Orissa) । ନାମ୍ପୋ ଜମିଦାରୀର ସ୍ଥାପୟିତା ଚନ୍ଦ୍ରଶେଖର ଚୌଧୁରୀ ଢାଲ ତରବାରି ସାହାଯ୍ୟରେ ଟୋଡରମଲ୍ଲଙ୍କ ସପକ୍ଷରେ ଯୁଦ୍ଧକରି ଢାଲିୟା ଉପାଧି ଓ ନାମ୍ପୋ ଜମିଦାରୀ ଲାଭ କରିଥିଲେ । ତାଙ୍କ ବଂଶାବଳୀ ଅବଧି ତାହା ଭୋଗ କରୁଅଛନ୍ତି ।

୬୩. ୧୫୭୫ ଖ୍ରୀ. ମୋଗଲମାରି ଯୁଦ୍ଧରେ ମୋଗଲ ସେନାପତି 'ଖାଁ ଖନାନ'ଙ୍କ ମୃତ୍ୟୁ ହୋଇଥିଲା ଏବଂ ମୁନିମ ଖାଁଙ୍କ ଅଶ୍ୱ ଭୟପାଇ ପଳାଇଥିଲା । ଏପରି ଅବସ୍ଥାରେ ଟୋଡରମଲ୍ଲ ପରାଭୂତ ପ୍ରାୟ ସୈନ୍ୟମାନଙ୍କୁ ଉତ୍ସାହିତ କରି ପୁନରାୟ ବିପକ୍ଷଙ୍କୁ ଆକ୍ରମଣ ଓ ପରାଭୂତ କରିଥିଲେ । ପଠାଣ ରାଜା ଦାଉଦ କଟକ ପଳାୟନ କରିଥିଲେ ।

୬୪. ଜଳେଶ୍ୱର ସୈନ୍ୟ ଗତିବିଧି ପଥରେ ଥିବା ହେତୁ ସେମାନଙ୍କୁ ରସଦ ଯୋଗାଇବାର ଆଦେଶ ମହାଶୟଙ୍କ ଉପରେ ହେଉଥିଲା । ସେ ଦାୟରୁ ପାର ପାଇବା ହେତୁ ସେମାନେ ଲକ୍ଷଣନାଥକୁ ପଳାଇଥିଲେ ବୋଲି କଥିତ ।

୬୫. ଲକ୍ଷଣନାଥରେ ଶାକ୍ତ ମତ ଦୁର୍ଗାପୂଜା ହେତୁ ବଳିଦାନର ଅତ୍ୟନ୍ତ ଧୁମ । ସନ୍ଧିପୂଜାଠାରୁ ଆରମ୍ଭ ହୋଇ ନବମୀ ପୂଜା ଶେଷ ପର୍ଯ୍ୟନ୍ତ ଅବିରାମ ବଳିଦାନ ହେଉଥାଏ ।

୬୬. ବିରାଟ ରାଜାଙ୍କ ଦକ୍ଷିଣ ଗୋଗୃହ ଯେଉଁଠାରେ ଥିଲା ବର୍ତ୍ତମାନ 'ଗୋପ' ଗ୍ରାମ ସେହିଠାରେ ଅବସ୍ଥିତ । ଗୋହାଳର ଅପଭ୍ରଂଶ ଗୋପ ବୋଲି କଥିତ ।

୬୭. 'ଗୋବରଘାଉଟା' ଗ୍ରାମ ଗୋପ ଗ୍ରାମର ଅନତିଦୂରରେ ଅବସ୍ଥିତ । ପ୍ରବାଦ, ଗୋଶାଳାର ଗୋବର ଯାକ ଏହି ସ୍ଥାନରେ ଜମା ହେଉଥିଲା ।

୬୮. 'ବିରାଟ' ନାମକ ପ୍ରକାଣ୍ଡ ପୁଷ୍କରିଣୀ ଗୋବରଘାଉଟାର ଅଦୂରରେ ଅବସ୍ଥିତ । ଏହି ସରସୀର ଚୌଦିକେ ଗୋଚାରଣ ସ୍ଥାନ । ଏହି ପୁଷ୍କରିଣୀରେ ଗୋରୁ ପାଣି ପିଉଥିଲେ । ଏହି ପୁଷ୍କରିଣୀରେ ଅନେକ ମାଛ ଅଛନ୍ତି, କିନ୍ତୁ ଦେବତାଙ୍କ ଭୟରେ କେହି ଧରନ୍ତି ନାହିଁ ।

୬୯. ବିରାଟର ପ୍ରାୟ ଅଢେଇ କୋଶ ଉତ୍ତରରେ 'ସରସଙ୍ଖ' ନାମକ ଗୋଟିଏ ବୃହତ୍ ପୋଖରୀ ଅଛି । ବିରାଟ ରାଜାଙ୍କ ଜ୍ୟେଷ୍ଠପୁତ୍ର 'ସଙ୍ଖ' ଏହାକୁ ଖନନ କରିଥିବାର କଥିତ । ୧୮୭୨ ସାଲର କାର୍ତ୍ତିକ ମାସର ତୋଫାନ୍ ସମୟରେ ଏହି ପୋଖରୀରେ ଏକ ହାତୀଶୁଣ୍ଢୀ (ଘୂର୍ଣ୍ଣିଝଡ଼) ପତିତ ହେବାରୁ ବହୁକାଳର ସମସ୍ତ ପଙ୍କୋଦ୍ଧାର ହୋଇଥିଲା ।

୭୦. ମେଦିନୀପୁର ସହରର ଅନ୍ତର୍ଗତ 'ଗୋପ' ନାମକ ସ୍ଥାନ ଉତ୍ତର ଗୋଗୃହ ବୋଲି କଥିତ ।

୭୧. ବିରାଟ ଦୁର୍ଗ ଏକ ପ୍ରାଚୀର ବେଷ୍ଟିତ, ମଧ୍ୟରେ ଏକ ଗଡ଼ଖାଇ ଦ୍ୱାରା ଦୁଇଖଣ୍ଡରେ ବିଭକ୍ତ ଓ ଏକ ଅସ୍ଥାୟୀ ସେତୁ ଦ୍ୱାରା ସଂଯୁକ୍ତ ଥିବାର ଜଣାଯାଏ । ପଶ୍ଚିମ ଭାଗ ଅନ୍ଦର ଦୁର୍ଗ ଏବଂ ସ୍ତ୍ରୀଲୋକଙ୍କ ଆବାସ ଥିଲା । ଅପର ଭାଗ ସଦର ଦୁର୍ଗ, ସୈନ୍ୟ ଓ ସେନାପତି କୀଚକଙ୍କ ବାସ ଥିଲା । ମହାଭାରତ ପାଠରୁ ଦୁଇ ଦୁର୍ଗ ନିକଟା ନିକଟି ଥିବାର ଜଣାପଡ଼େ । ତହିଁରେ ଲିଖିତ ଅଛି, ବିରାଟ ମହିଷୀ ସୁଦେଷ୍ଣା ନିଜ ଭ୍ରାତା କୀଚକଙ୍କୁ କହୁ ଅଛନ୍ତି 'ହେ ସୁତ ନନ୍ଦନ ! ତୁମି ପର୍ବୋପଲକ୍ଷେ ସୁରା ଓ ଅନ୍ନ ପ୍ରସ୍ତୁତ କରିବେ; ଆମି ସୁରା ଆହରଣାର୍ଥ ସୈରିନ୍ଧ୍ରୀକେ ତୋମାର ନିକଟ ପାଠାଇବ' ଇତ୍ୟାଦି । (କାଳୀସିଂହକୃତ ମହାଭାରତ)

୭୨. କୀଚକଙ୍କ ଇଷ୍ଟଦେବୀ 'କୀଚକେଶ୍ୱରୀ' ବାହାର ଗଡ଼ରେ ଥିବାର କଥିତ ଅଛି । ପରେ ଦୁର୍ଗ ମୟୂରଭଞ୍ଜ ରାଜାଙ୍କ ଦ୍ୱାରା ବିଜିତ ହେବାରୁ ଦେବୀ ମୟୂରଭଞ୍ଜକୁ ନୀତ ହୋଇଅଛନ୍ତି ।

୭୩. ଏହି ବିରାଟ ଗଡ଼ର ପରିଧି ୪କ୍ରୋଶ । ଏହାର ପ୍ରାକାର ମାଙ୍କଡ଼ାପଥରରେ ନିର୍ମିତ ସୁଉଚ୍ଚ ଓ ସୁବିସ୍ତୃତ, ଅବଧି ଅକ୍ଷୁଣ୍ଣ ଭାବରେ ଅବସ୍ଥିତ । ଏହି ପ୍ରାକାର ତିନିଫେରା ଗଡ଼ଖାଇ ଦ୍ୱାରା ପରିବେଷ୍ଟିତ ଥିଲା । ସେ ଖାଇ ସମସ୍ତ ପୋତିଯାଇ ଅଛି । ଏହି ଖାଇମାନଙ୍କ ମଧରେ ମାଟିର ପ୍ରାକାର ଥିବାର ଜଣାଯାଏ । ଗଡ଼ ମଧ୍ୟରେ ଅସଂଖ୍ୟ କ୍ଷୁଦ୍ରକ୍ଷୁଦ୍ର ପୋଖରୀ ଅଛି; ତାହାର ଚତୁଃପାର୍ଶ୍ୱରେ ଘର ଥିବାର ଜଣାପଡ଼େ । ଏହି ସମସ୍ତ ଘର ସୈନ୍ୟମାନଙ୍କର ଆବାସ ଥିବାର କଥିତ । ଗଡ଼ ଭିତରେ ଦକ୍ଷିଣ ଦ୍ୱାରର ଅନତିଦୂରେ ସ୍ତୂପାକାର ପ୍ରସ୍ତରରାଶି । ଦେଖିଲେ ବୋଧହୁଏ ଏକ ପ୍ରକାଣ୍ଡ ଘରର ଭଗ୍ନାବଶେଷ । ଏହି ସ୍ତୂପର ଚତୁର୍ଦ୍ଦିଗ ପ୍ରାୟ ୨୦ହାତ ବ୍ୟବଧାନରେ ଏକ ପ୍ରାଚୀରର ଭଗ୍ନାବଶେଷ ଏବଂ ପ୍ରତ୍ୟେକ ପାଖ ପ୍ରାଚୀରର ମଧ୍ୟସ୍ଥଳରେ ପହରାବାଲାଙ୍କ ଗୁମୁଟିର ଭଗ୍ନାବଶେଷ । ଏହି ଭଗ୍ନ ସ୍ତୂପରେ ପ୍ରସ୍ତର ନିର୍ମିତ ଏକ ଜାଉଁଳି କବାଟ ଓ ତାହାର ଚୌକାଠ ପଡ଼ିଥିଲା । ପ୍ରତ୍ୟେକ କବାଟ ପ୍ରାୟ ୨ହାତ ଚୌଡ଼ା, ୪ ହାତ ଲମ୍ୱା ଓ ଏକଫୁଟ ମୋଟ । ଚୌକାଠ ତଦୁପଯୋଗୀ । ଚୌକାଠ ସହିତରେ କବାଟ ହାଁସକଳ ଡୁମୁଣି ଦ୍ୱାରା ଯୁକ୍ତଥିବାର ଚିହ୍ନ ମିଳଇ । ଏହା ପୂର୍ବ ଧନାଗାର ବୋଲି କଥିତ ।

ବାହାର ଗଡ଼ର ଉତ୍ତରପଶ୍ଚିମ କୋଣରେ, ଅନ୍ଦର ଓ ବାହାର ଗଡ଼ ସଂଯୋଗ ସେତୁର ନିକଟରେ ରାଜ ଦରବାର ଗୃହର ଭଗ୍ନାବଶେଷ । ଯାହା ଅବଶିଷ୍ଟ ଅଛି ତାହାର କାରୁକାର୍ଯ୍ୟ ଦେଖିଲେ ମନ ବିମୋହିତ ହୁଏ । ଅନ୍ଦରଗଡ଼ରେ କେବଳ ଭଗ୍ନସ୍ତୂପ । ଗଡ଼ ଜଂଗଲାକୀର୍ଣ୍ଣ ଏବଂ ବାଘ ଭାଲୁଙ୍କର ଅଡ୍ଡା ହୋଇଅଛି । ଗ୍ରନ୍ଥକାର ପ୍ରାୟ ୨୦ବର୍ଷ ପୂର୍ବେ (୧୮୯୦)ସ୍ୱୟଂ ଗଡ଼ର ଯେପରି ଅବସ୍ଥା ଦେଖିଥିଲେ ତାହାହିଁ ସଂକ୍ଷେପରେ ବର୍ଣ୍ଣିତ ହୋଇଅଛି ।

୭୪. କଥିତ ହୁଅଇ ପ୍ରାଚୀନ ବିରାଟ ବଂଶ ଧ୍ୱଂସ ପରେ ଭୂୟାଁ ଉପାଧିକାରୀ ଏକ ସଭ୍ୟ ଜାତି ଏହି ଦୁର୍ଗର ଅଧିକାରୀ ହୋଇଥିଲେ । ଏମାନେ ଛୋଟନାଗପୁର ଅଞ୍ଚଳରୁ ଆସି ମୟୂରଭଞ୍ଜ ପ୍ରଭୃତି ଅଞ୍ଚଳରେ ବାସ କରିଥିଲେ । ସେମାନେ

ଭୂମିପୁତ୍ର ଭୂୟାଁ ବୋଲି ନିଜ ପରିଚୟ ଦିଅନ୍ତି । ବୋଧହୁଏ ଏହି ବଂଶର କୌଣସି କ୍ଷମତାଶାଳୀ ବ୍ୟକ୍ତି ଉକ୍ତ ଦୁର୍ଗ ଅଧିକାର କରି ରାଜତ୍ୱ କରୁଥିଲେ । ଏମାନଙ୍କ ମଧ୍ୟରେ ଏକ ଦଳ ରାଜକୋଲି ଭୂୟାଁ ନାମରେ ଅବଧି ଅଭିହିତ ବୋଧହୁଏ ଏହି ବଂଶର ପୂର୍ବପୁରୁଷମାନେ ଗଡ଼ର ଅଧିକାରୀ ଥିଲେ । ଇଂରାଜ କର୍ତ୍ତୃକ ଓଡ଼ିଶା ଜୟପରେ ଲକ୍ଷ୍ମଣନାଥ ମହାଶୟଙ୍କ ଏକ ଭାଇ ଭୈରବଚନ୍ଦ୍ର ରାୟଙ୍କ ପିତା ଇଂରାଜ ସୈନ୍ୟ ସାହାଯ୍ୟରେ ଏହି ଦୁର୍ଗ ଜୟ କରି 'ରାୟବଣିଆ' (ରାୟ ଭୂୟାଁର ଅପଭ୍ରଂଶ) ନାମ ଦେଇଥିଲେ ଏବଂ ଯେଉଁ ସ୍ଥାନମାନ ଏହି ଗଡ଼ ଅଧିକାରୀଙ୍କ ଅଧୀନ ଥିଲା ତାହାର ନାମ ଫତେୟାବାଦ ('ଫତେ'- ଜୟ ଓ 'ଆବାଦ' ଶବ୍ଦ ଦ୍ୱୟରୁ ଉତ୍ପତ୍ତି) ନାମ ଦେଇଥିଲେ । ଅବଧି ସେହି ନାମମାନ ଅଛି ।

୭୫. ବର୍ତ୍ତମାନ କପତିପଦା ନଗର ପ୍ରାଚୀନ ବିରାଟ ନଗର ବୋଲି କଥିତ । ଏଠାରେ ସୁଦୀର୍ଘ ଏକ ପ୍ରସ୍ତର ସ୍ତମ୍ଭ ଅଛି । ଲୋକେ ଏହାକୁ ପ୍ରାଚୀନ ଶମୀବୃକ୍ଷର ଗଣ୍ଡଦେଶ ବୋଲି କହନ୍ତି । ବୃକ୍ଷର ଗଣ୍ଡଦେଶ ନୈସର୍ଗିକ କାରଣରୁ ପ୍ରସ୍ତର ହୋଇଥିବାର କଥିତ । ବିଜ୍ଞାନ ଏପରି ପରିବର୍ତ୍ତନ ସ୍ୱୀକାର କରେ ।

୭୬. ମହେନ୍ଦ୍ର ପର୍ବତ ଆଧୁନିକ ମୟୂରଭଞ୍ଜର ଅନ୍ତର୍ଗତ ଥିବାର କଥିତ । ଏହିଠାରେ ନାଗରାଜ କୌରବ୍ୟଙ୍କ ଉଲୁପୀ ନାମକ କନ୍ୟାକୁ ବିବାହ କରି ଅର୍ଜୁନ କିଛିକାଳ ବାସ କରିଥିଲେ । (Wheelers History of India) ଏହି ସ୍ଥାନ ମତ୍ସ୍ୟରାଜ୍ୟ (ବିରାଟର) ନିକଟବର୍ତ୍ତୀ ଥିବାରୁ ଏହିଠାରେ ବାସକାଳୀନ ଅର୍ଜୁନ ତାହାର ଆଭ୍ୟନ୍ତରିକ ସନ୍ଧାନ ପାଇଥିଲେ । ହସ୍ତିନାଠାରୁ ବହୁଦୂରେ ଅବସ୍ଥିତ ଥିବାରୁ ଅଜ୍ଞାତବାସ ସମୟରେ ଏହି ସ୍ଥାନକୁ ସେ ମନୋନୀତ କରିଥିଲେ ।

୭୭. ପିପଲୀ ପର୍ତ୍ତୁଗୀଜମାନଙ୍କ ଦ୍ୱାରା ୧୫୧୪ ଖ୍ରୀ.ରେ ସ୍ଥାପିତ । ଇଂରାଜମାନେ ୧୬୩୪ ଖ୍ରୀ.ରେ ବଂଗଳାର ଶାସନକର୍ତ୍ତା ଆଜମ ଖାଁଙ୍କ ଆଦେଶରେ ଏଠାରେ ପ୍ରବେଶ କରିଥିଲେ ।

୭୮. କଥିତ ଅଛି ପର୍ତ୍ତୁଗୀଜମାନେ ସାହାବନ୍ଦର ଭୂୟାଁଙ୍କ ଆଦିପୁରୁଷଙ୍କୁ ମଦ୍ୟ ତୈୟାରି ସକାଶ ବଂଗଳାରୁ ଆଣିଥିଲେ । ସେ ସେହି ବ୍ୟବସାୟ ବଳରେ ଧନୀ ହୋଇ 'ସାହାବନ୍ଦର' ଗ୍ରାମ ସ୍ଥାପନ କରତ ସେଠାରେ ବାସ ଓ ଅନେକ ଜମି ଅଧିକାର କରିଥିଲେ । 'ସାହା' (ଶୁଣ୍ଡିଙ୍କ ଉପାଧି)ଙ୍କ ଦ୍ୱାରା ଓ 'ବନ୍ଦର'

(ପିପଳୀ) ଉପାର୍ଜିତ ଧନରୁ ସ୍ଥାପିତ, ତେଣୁ ଗ୍ରାମର ନାମ 'ସାହାବନ୍ଦର' । ଧନଶାଳୀ ହେବାପରେ ତାଙ୍କ ବଂଶଧରମାନେ ଜମିଦାର ବୋଲି 'ଭୂୟାଁ' ଓ ବଳବାନ ବୋଲି 'ରାୟ' ଉପାଧି ଗ୍ରହଣ କରିଥିଲେ ।

୭୯. ଜାମକୁଣ୍ଡା ଭୂୟାଁଙ୍କ ଆଦିପୁରୁଷ ଅବଧାନ ଥିଲେ । ତାଙ୍କ ପରବର୍ତ୍ତୀ ପୁରୁଷମାନେ ବୋମ୍ବାଟିଆ । ସୁବର୍ଣ୍ଣରେଖା ମୋହାଣରେ ଭୁଷଣ୍ଡେଶ୍ୱର ନାମକ ପ୍ରକାଣ୍ଡ ଲିଙ୍ଗ ତାଙ୍କର ସ୍ଥାପିତ ।

କଥିତ ଅଛି ଲୋକମାନଙ୍କୁ ଧାନଚାଷ ଶିକ୍ଷା ଦେବା ସକାଶ ମହାଦେବ ସ୍ୱୟଂ ଷୋଳସା ପାଣ୍ଠ ଚାଷ କରିଥିଲେ । ନିଦର୍ଶନ, ଲଙ୍ଗଳେଶ୍ୱର ମହାଦେବ ଓ ଲଙ୍ଗଳେଶ୍ୱର ପ୍ରଗଣା ।

୮୦. 'ଦେବଗିରି' ନାମକ ଏକ ଶାକ୍ତ ବାସୁଳୀ ପ୍ରତିଷ୍ଠିତା ।

୮୧. କଥିତ ଅଛି, ମକୁ ଓ ଛକୁ ନାମକ ଦୁଇଭାଇ ପୁରୀର ବିମଳା ମନ୍ଦିରର ପହରାରେ ନିଯୁକ୍ତ ଥିବା ସମୟରେ ଏକ ମହାଯୋଗ ପଡ଼ିଥିବାରୁ ଭାଇମାନେ ସେହି ଦେବୀଙ୍କୁ ସେହି ସମୟରେ ପୂଜାରେ ସନ୍ତୁଷ୍ଟ କରି ତାଙ୍କ ଆଦେଶ ଅନୁସାରେ ତାଙ୍କ ମନ୍ଦିରରୁ ଖଡ୍ଗ ନେଇ ଦିଗ୍‌ବିଜୟରେ ବାହାରିଥିଲେ । ବୈତରଣୀ ପାର ହୋଇ ବଡ଼ଭାଇ ମକୁ ଭୂଇଁ ଭେଡ଼ା, ଆଙ୍କୁଡ଼ା ଓ ସାନଭାଇ ଛକୁ ଭୂଇଁ ସୁବର୍ଣ୍ଣରେଖା ପାର ହୋଇ ଭୋଗରାଇ, ପଟାସପୁର ପ୍ରଗଣାମାନ ଅଧିକାର କରିଥିଲେ । ବଡ଼ଭାଇ ଉତ୍ତରେ ଗୁମାଇଁ, ଦକ୍ଷିଣେ ମତାଇ, ପୂର୍ବେ ସାଗର ମଧ୍ୟସ୍ଥ ସ୍ଥାନରେ ନିଜ ଅଧିକାର ବିସ୍ତାର କଲେ । ସାନଭାଇ ଉତ୍ତରରେ କଂସାବତୀ, ଦକ୍ଷିଣେ ସୁବର୍ଣ୍ଣରେଖା, ପୂର୍ବେ ସାଗର ମଧ୍ୟସ୍ଥ ସ୍ଥାନରେ ନିଜ ଅଧିକାର ସ୍ଥାପନ କଲେ । ଛକୁଙ୍କ ବଂଶଧର ମଧ୍ୟରେ କିଶୋରୀନନ୍ଦନ ଅତ୍ୟନ୍ତ ବିଖ୍ୟାତ ଥିଲେ । ସେ ନିଃସନ୍ତାନ ଥିବାରୁ ଗୋପେନ୍ଦ୍ରନନ୍ଦନଙ୍କୁ ପୋଷ୍ୟପୁତ୍ର କରିଥିଲେ । କଥିତ ଅଛି, ଗୋପେନ୍ଦ୍ର ବାଟରେ ଏକ ଗାତ ଖୋଳୁଥିଲେ, ଏମନ୍ତ ସମୟରେ କିଶୋରୀ ସେହି ବାଟଦେଇ ଶିବିକାରୋହଣରେ ଯାଉଁଯାଉଁ ଗାତ ଦେଖି ବାହକମାନେ ଗୋପେନ୍ଦ୍ରଙ୍କୁ ଗାଳିଦେଲେ । ଗୋପେନ୍ଦ୍ର ତଦୁତ୍ତରେ କହିଲେ- "ତୁମ୍ଭେମାନେ ଥରେ ଏହି ବାଟେ ଦେଖି ଚାଲିଯିବ, ଆମ୍ଭେମାନେ ସଦାସର୍ବଦା ଏହିଠାରେ ଖେଳୁଁ; ସୁତରାଂ ଗାତରେ ପଡ଼ିବାର ହେଲେ ଆମ୍ଭେମାନେ ପଡ଼ିବୁ ।"

ଏହିକଥା ଶୁଣି କିଶୋରୀ ତାଙ୍କୁ ଅତି ବୁଦ୍ଧିମାନ ସ୍ଥିର କରି ତାଙ୍କ ପରିଚୟ ନେଇ ପୋଷ୍ୟପୁତ୍ର କରିଥିଲେ ।

୮୨. ଭୋଗରାଇ ଗ୍ରାମର ଦକ୍ଷିଣେ 'କରାତଶାଳ' । ପିପଳୀ ବନ୍ଦର ଥିବା ସମୟରେ ଏଠାରେ ଅନେକ ସୂତ୍ରଧର ବାସକରି ବନ୍ଦର ସକାଶ ଜାହାଜ ନିର୍ମାଣ ଓ ମରାମତ କରୁଥିଲେ ।

୮୩. ବୀରକୂଳରେ ଓୟାରେଣ ହେଷ୍ଟିଂସଙ୍କ ସ୍ୱାସ୍ଥ୍ୟ-ନିବାସ ଥିଲା ।

୮୪. ଇଡ଼ଦା ପ୍ରହରାଜ ବଂଶର ଆଦିବାସସ୍ଥାନ ମାନଧାତା ଗଡ଼ । କଥିତ ଅଛି, ଶତ୍ରୁ କର୍ତ୍ତୃକ ଗଡ଼ ଆକ୍ରାନ୍ତ ହେଲାରୁ ଗଡ଼ ଅଧିକାରୀଙ୍କ ଏକ କନ୍ୟା ଶତ୍ରୁ ବିଜୟ କରି ଗଡ଼ରକ୍ଷା କରିଥିଲେ । ତାଙ୍କ ପ୍ରତିମୂର୍ତ୍ତି ଘାଟ ଉପରେ ସ୍ଥାପିତ ଓ ସେହି ମୂର୍ତ୍ତି ବର୍ଷରେ ଥରେ ପୂଜିତ ହୁଏ । ଏହି ବଂଶର ଉପାଧି ପୂର୍ବେ ମାନଧାତା ଥିଲା, ପରେ ପ୍ରହରାଜ ସଂଯୁକ୍ତ ହୋଇଅଛି । ଓଡ଼ିଶା ଗଡ଼ଜାତ ରାଜାଙ୍କର ଏକ ନିୟମ ପ୍ରଚଳିତ ଥିଲା ଯେ ସିଂହାସନ ସ୍ଥିତ ରାଜାଙ୍କ ମୃତ୍ୟୁ ହେଲେ ତାଙ୍କ ଅନ୍ତ୍ୟେଷ୍ଟିକ୍ରିୟା ଶେଷ ନହେବା ପର୍ଯ୍ୟନ୍ତ ଭାବି ରାଜା ଅଶୌଚ ହେତୁ ସିଂହାସନାରୋହଣ କରି ପାରୁ ନଥିଲେ । ମାତ୍ର ସିଂହାସନ ଶୂନ୍ୟ ରହିବ ନାହିଁ । ସେଥିସକାଶ କୌଣସି ବ୍ରାହ୍ମଣଙ୍କୁ ପ୍ରହରେ ସେହି ସମୟରେ ସିଂହାସନରେ ବସାଉଥିଲେ । ଏହିପରି ବ୍ରାହ୍ମଣମାନେ ପ୍ରହରାଜ ଉପାଧି ପାଉଥିଲେ । ଇଡ଼ଦା ପ୍ରହରାଜଙ୍କ ପୂର୍ବପୁରୁଷ ଏହିପରି ମୟୂରଭଞ୍ଜ ସିଂହାସନରେ ବସି ପ୍ରହରାଜ ହୋଇଥିଲେ ।

୮୫. ପୂର୍ବେ ବାଲେଶ୍ୱର ସମୁଦ୍ରକୂଳରେ ପଙ୍ଗା ଲବଣ ପୋକ୍ତାନ ହେଉଥିଲା । ଲିଭରପୁଲରୁ ଲବଣ ଆମଦାନୀ ଠାରୁ ପୋକ୍ତାନ ନାହିଁ ।

୮୬. ପ୍ରାଚୀନ ମୟୂରଭଞ୍ଜ ବିରାଟ ରାଜ୍ୟ ବୋଲି କଥିତ । ବିରାଟ ରାଜ୍ୟ ଧ୍ୱଂସ ପରେ ଜୟପୁର ରାଜବଂଶୀୟ କୌଣସି ବ୍ୟକ୍ତି ପ୍ରାୟ ୨୦୦୦ ବର୍ଷ ପୂର୍ବେ ଏହି ରାଜ୍ୟ ଅଧିକାର କରିଥିଲେ । ପ୍ରବାଦ ମୟୂର ଡିମ୍ବରୁ ଏହି ରାଜବଂଶର ଉତ୍ପତ୍ତି । ତେଣୁ ମୟୂର ଶିକାର ଏ ରାଜ୍ୟରେ ମନା ଅଛି । (Hunter's Orissa)

୮୭. ଛୋଟନାଗପୁର ରାଜବଂଶର ଏକ କୁମାର ଗୃହରୁ ତାଡ଼ିତ ହୋଇ ସନ୍ନ୍ୟାସୀ ବେଶରେ ପୁରୀ ବଡ଼ଛତା ତଳେ ବାସ କରି ସର୍ବଦା ବେଦଗାନ କରୁଥିଲେ ।

ତାଙ୍କୁ ଦେଖି ପୁରୀ ରାଜା ପ୍ରତାପରୁଦ୍ର ଦେବଙ୍କ କନ୍ୟା କରଲା ଦେବୀ ଆସକ୍ତା ହେବାରୁ ତାଙ୍କ ସହିତ ବିବାହ ହୋଇଥିଲା ଓ ଯୌତୁକ ସ୍ୱରୂପ ନୀଳଗିରି ଦାନ ଦିଆ ହୋଇଥିଲା । ନୀଳଗିରି ରାଜାଙ୍କ ସନ୍ତକ କରଲା ଫୁଲ । (Hunter's Orissa)

୮୮. କେଉଁଝର ମୟୂରଭଞ୍ଜର ଏକ ଅଂଶ । ସେଠାରେ ଭୂୟାଁ ନାମକ ଜାତି ବାସ କରନ୍ତି । ସେମାନେ ପ୍ରାୟ ଏକ ହଜାର ବର୍ଷ ପୂର୍ବେ ବହୁ ଦୂରବର୍ତ୍ତୀ ବିପଦ ସଂକୁଳ ଅରଣ୍ୟ ଅତିକ୍ରମ କରି ମୟୂରଭଞ୍ଜ ରାଜାଙ୍କ ଠାକୁ କର ଇତ୍ୟାଦି ଦେବାକୁ ଯାଉଥିଲେ । ଯେଉଁମାନେ ଯାଉଥିଲେ, ସେମାନେ ପ୍ରାୟ ଫେରି ଆସୁନଥିଲେ । ଅନେକ ହିଂସ୍ର ଜନ୍ତୁ ଦ୍ୱାରା ନିହତ ହେଉଥିଲେ ବା ପଥରେ ରୋଗାକ୍ରାନ୍ତ ହୋଇ ମରୁଥିଲେ । ସେହି କାରଣରୁ ସେମାନେ ନିଜର ଜଣେ ରାଜା କରିବାର ସ୍ଥିର କରି ତତ୍କାଳୀନ ମୟୂରଭଞ୍ଜ ନରପତିଙ୍କ ଏକ ପୁତ୍ରଙ୍କୁ ଚୋରାଇ ଆଣି କେଉଁଝରର ରାଜା ବୋଲି ଘୋଷଣା କଲେ । (Macmillan's History) ଇଂରାଜ ଅମଳରେ ଏହି ରାଜ୍ୟ ସ୍ୱତନ୍ତ୍ର ରାଜ୍ୟରୂପେ ପରିଗଣିତ ହୋଇଅଛି ।

୮୯. ମେଘାସନ ପର୍ବତ ମୟୂରଭଞ୍ଜ ଦକ୍ଷିଣାଂଶରେ ଅଛି । ଏହା ୩୮୨୪ଫୁଟ ଉଚ୍ଚ । ଏହା ଅତି ଶୀତଳ, ସମୟେ ସମୟେ ଏଠାରେ ବରଫ ପଡ଼େ ।

୯୦. ନୀଳଗିରି ମଧ୍ୟରେ ସୋନଚୂଟ(ସ୍ୱର୍ଣ୍ଣଚୂଡ଼) ସର୍ବାପେକ୍ଷା ଉଚ୍ଚ । ତାହା ପାର୍ଶ୍ୱରେ ଡୋମିରଣା ଅବସ୍ଥିତ । ଏହି ପର୍ବତର ଶିରୋଦେଶରେ ଡୋମାଇ ଓ ରଣା ସ୍ତ୍ରୀ ପୁରୁଷ ଦ୍ୱୟର ପ୍ରସ୍ତରମୂର୍ତ୍ତି । ପ୍ରବାଦ, ଡୋମାଇ ଗର୍ଭବତୀ, ସାଧ ସକାଶ ମାଛ ଖାଇବ । ଗିରି ପାଦତଳେ ସମୁଦ୍ର ପ୍ଲାବିତ ହୋଇ ପାଣି ଆସିଲେ ରଣା ମାଛ ଧରି ନିଜ ସ୍ତ୍ରୀର ଆଶାପୂର୍ଣ୍ଣ କରିବ । କେହିକେହି କହନ୍ତି ଏହା ଭାବି ପ୍ରଳୟ ସୂଚକ ମୂର୍ତ୍ତି ।

୯୧. ଏହି ପର୍ବତ ରାମାୟଣୋକ୍ତ 'ଗନ୍ଧମାର୍ଦ୍ଦନ' ବୋଲି କଥିତ । ହନୁମାନ ଗନ୍ଧମାର୍ଦ୍ଦନକୁ ଆନୟନ କରି ତହିଁରୁ ଔଷଧ ସଂଗ୍ରହ ହେଲାପରେ ପୁଣି ଯଥା ସ୍ଥାନରେ ତାକୁ ରଖିବା ସକାଶ ନେଇ ଯାଉଯାଉ ପଥ ମଧ୍ୟରେ ସୂର୍ଯ୍ୟୋଦୟ ହେବାରୁ ଏହିଠାରେ ରଖି ଚାଲି ଯାଇଥିଲେ ।

***

(କ) ଓଡ୍ର ଦେଶର ଦକ୍ଷିଣ ସୀମା କାଁସବାଁଶ ଉତ୍ତର ମେଦିନୀପୁର । (Stirling's History) କବି କାଳିଦାସ ମେଦିନୀପୁରକୁ ଉତ୍କଳ କହି ଅଛନ୍ତି । ସୁତରାଂ କାଁସବାଁଶର ଦକ୍ଷିଣ 'କଳିଙ୍ଗ' ବା ରାମାୟଣର 'କିଷ୍କିନ୍ଧ୍ୟା' ।

(ଖ) ଇଂରାଜ କର୍ତ୍ତୃକ ଓଡ଼ିଶା ଜୟପରେ ପ୍ରଥମେ କେବଳ କଟକ ଜିଲ୍ଲାରୂପେ ପରିଗଣିତ ହୋଇଥିଲା ଓ ଆରକର ସାହେବ ସେଠାରେ କଲେକ୍ଟର ହୋଇଥିଲେ । ୧୮୨୭ଖ୍ରୀ.ରେ ବାଲେଶ୍ୱର ଜିଲ୍ଲା ହେଲା ଓ ହେନେରି ରିକେଟ ସାହେବ ତାହାର କଲେକ୍ଟର ହେଲେ । ସେ ବାଲେଶ୍ୱରବାସୀଙ୍କର ଅତ୍ୟନ୍ତ ପ୍ରିୟ ଥିଲେ ଓ ଦେଶର ଅନେକ ଉପକାର କରି ଯାଇଥିଲେ । ସେ ନିମକ ମାହାଲ ନିଜ ଅଧୀନରେ ନେଇ ତାହାର ପୂର୍ବ ଅତ୍ୟାଚାର ନିବାରଣ କରିଥିଲେ । ପଥିକଙ୍କ ସୁବିଧା ସକାଶ ବାଲେଶ୍ୱର କଚେରି ଓ ବାଗ ବୃନ୍ଦାବନ ସଡ଼କର ପ୍ରାଚୀନ ଅଶ୍ୱସ୍ଥ ଓ ବଟବୃକ୍ଷମାନ ତାଙ୍କ ରୋପିତ । ପରେ କଲେକ୍ଟର ନରମାନ ଓ ମିଉନିସିପାଲ ଚେୟାରମେନ୍ ଡାକ୍ତର ଜୋରାବ ସାହେବ ନଷ୍ଟ ବୃକ୍ଷ ସ୍ଥାନରେ ଓ ସ୍ଥାନ ବିଶେଷରେ ନୂତନ ବୃକ୍ଷ ରୋପଣ କରିଥିଲେ । ସେ ଲବଣ ବୋଝେଇ ବୋଟ ଯାତାୟତ ସୁବିଧା ସକାଶ ଗୋମାଇ ଓ ମତାଇ ନଦୀମାନଙ୍କୁ ଏକ ନାଳଦ୍ୱାରା ସଂଯୁକ୍ତ କରିଥିଲେ, ଅବଧି ତାହାର ଚିହ୍ନ ଅଛି ଓ ରିକେଟ କେନାଲ ନାମରେ ଅଭିହିତ । ସେ ୧୮୬୬ ଖ୍ରୀ. ଦୁର୍ଭିକ୍ଷ ସମୟରେ ବାଲେଶ୍ୱରବାସୀଙ୍କ ସାହାଯ୍ୟ ସକାଶ ୫୦୦ଟଙ୍କା ବିଲାତରୁ ପଠାଇଥିଲେ । ତାଙ୍କ ପତ୍ନୀର ବାଲେଶ୍ୱରରେ ମୃତ୍ୟୁ ହେବାରୁ ବାରବାଟୀ କବରଖାନାରେ ତାଙ୍କର କବର ଅଛି ।

(ଗ) ବକତିଆର ଖିଲିଜଙ୍କ ଆକ୍ରମଣ ସମୟରେ ବଂଗଳାର ରାଜା ଲକ୍ଷ୍ମଣ ସେନ୍ ପଳାୟନ କରି ପୁରୀରେ ଆଶ୍ରୟ ନେଇଥିଲେ । ପରେ ପୁରୀ ରାଜାଙ୍କ ଠାରୁ କେତେକ ଜମିପାଇ ଭଦ୍ରକରେ ବାସ କରିଥିଲେ । ଭଦ୍ରଖବାସୀ ବଙ୍ଗାଳୀମାନେ ତାଙ୍କର ଅନୁଚର ବୋଲି କଥିତ । (ପ୍ୟାରୀବାବୁଙ୍କ ଓଡ଼ିଶା ଇତିହାସ)

(ଘ) ଭଦ୍ରକାଳୀ ଗ୍ରାମଠାରେ ସାଳନ୍ଦୀ ଉତ୍ତରବାହିନୀ । ସେହିଠାରେ ଏକ କାପାଳୀ ଭଦ୍ରକାଳୀ ମୂର୍ତ୍ତି ସ୍ଥାପନ କରିଥିଲେ । ଦେବୀଙ୍କ ନାମାନୁସାରେ ଗ୍ରାମର ନାମ ହୋଇଅଛି ।

(ଙ) ରେମୁଣାରୁ ଯାଇ ଶ୍ରୀ ଚୈତନ୍ୟ ସାନ୍ଥିଆରେ ଶୀତକାଳ ଯାପନ କରିଥିଲେ । ସେ ଯେଉଁ କନ୍ଥାଘୋଡ଼ିହୋଇ ଶୀତ ନିବାରଣ କରିଥିଲେ, ତାହା ଅବଧି ସେଠାରେ ଯତ୍ନ ସହିତ ରକ୍ଷିତ ହୋଇଅଛି ଏବଂ ମାଘମାସର ଦିବସ ବିଶେଷରେ ସର୍ବସାଧାରଣଙ୍କ ସମକ୍ଷରେ ବାହାର କରାହୋଇଥାଏ । ସାନ୍ଥିଆର ମଠ ଶ୍ରୀଚୈତନ୍ୟଙ୍କ ସ୍ମୃତି ସୂଚକ ।

(ଚ) କାଉପୁର ମହାଶୟ-ବଂଶ ଲକ୍ଷଣନାଥର ଏକ ଶାଖା ।

(ଛ) କାଉପୁର ନିକଟସ୍ଥ ସାଳିନ୍ଦୀ ଗର୍ଭରେ 'ଦେବର କୁଣ୍ଡ' ନାମକ ମାଙ୍କଡ଼ା ପଥରରେ ଗଜଗିରି କରା ଏକ କ୍ଷୁଦ୍ର ପୋଖରୀ ଅଛି । ପୂର୍ବେ ବୋଧହୁଏ ଦୂରେ ଥିଲା, କ୍ରମେ ନଦୀଗର୍ଭସ୍ଥ ହୋଇଅଛି । ଏହି କୁଣ୍ଡ ଉପଲକ୍ଷରେ ଏକ ମେଳା ହୁଏ, ସେଦିନ ଏହାକୁ ପରିଷ୍କାର କରା ହୋଇଥାଏ ।

(ଜ) ଆଗରପଡ଼ା ଜମିଦାର ବଂଶ, ମାନସିଂହଙ୍କ ବଂଶଧର ବୋଲି ପ୍ରକାଶିତ । ପୂର୍ବେ ସେମାନେ ରାଜା ବୋଲାଉଥିଲେ ।

(ଝ) ଆଡ଼ଡ଼ୀ ଗ୍ରାମରେ ଅଡ଼ଡ଼େଶ୍ୱର ନାମକ ଶିବ ଅଛନ୍ତି । ତାଙ୍କ ଚରଣାମୃତ ପାନ କଲେ ସର୍ପଦଂଶନର ବିଷ ନଷ୍ଟ ହେଉଥିଲା ବୋଲି କଥିତ ।

(ଞ) ପାଳିୟା ଗ୍ରାମରେ ବ୍ରହ୍ମାଙ୍କ ଏକ ମନ୍ଦିର ଅଛି । ଓଡ଼ିଶାର ଅନ୍ୟତ୍ର ବ୍ରହ୍ମାର ମନ୍ଦିର ନାହିଁ । ଏହି ଦେଉଳଟି ପ୍ରକାଣ୍ଡ ଓ ଏଥିରେ ନାନା ପ୍ରକାର କାରୁକାର୍ଯ୍ୟ ଅଛି । ଏଥିରେ ବ୍ରହ୍ମାଙ୍କ ଏକ ପ୍ରକାଣ୍ଡ ମୂର୍ତ୍ତି ଅଛି । ତାହାଛଡ଼ା ବିଷ୍ଣୁଙ୍କ ନାଭିରୁ ବ୍ରହ୍ମାଙ୍କ ଜନ୍ମ ବିକାଶକ ଆଉ ଏକ ମୂର୍ତ୍ତି ଅଛି । ଏହି ମୂର୍ତ୍ତି ମୁଗୁନି ପ୍ରସ୍ତର ନିର୍ମିତ, ସୁତରାଂ କାଶୀରୁ ଆନୀତ ବୋଲି ବୋଧହୁଏ । ମନ୍ଦିର ବର୍ତ୍ତମାନ ପତନୋନ୍ମୁଖ, ଏହା ସମ୍ବନ୍ଧରେ କୌଣସି ଇତିହାସ ବା ପ୍ରବାଦ ଦୁଷ୍ପ୍ରାପ୍ୟ । ନିକଟରେଏକ ପୋତିଗଲାପ୍ରାୟ ପ୍ରକାଣ୍ଡ ବ୍ରହ୍ମକୁଣ୍ଡ ନାମକ ପୁଷ୍କରିଣୀ ଓ ଏକ ଲବଣାକ୍ତ ପ୍ରକାଣ୍ଡ ତୃଣାଦି ବିହୀନ ଚତ୍ୱର । ପ୍ରତିବର୍ଷ ବାରୁଣୀ ଦିନରେ ଏହି ଚତ୍ୱରର ସ୍ଥାନେସ୍ଥାନେ ଲବଣାକ୍ତ ପାଣି ଦେଖାଯାଏ ।

(ଟ) ମନ୍ଦିର ସମୀପରେ ଏକ ମଜିଦ । ପଠାଣ ସେନାପତି ମହମ୍ମଦ ଦୀନ ମନ୍ଦିରର ଭଗ୍ନ ପ୍ରାଚୀରରୁ ପ୍ରସ୍ତରାଦି ନେଇ ନିର୍ମାଣ କରିଥିଲେ ।

(ଠ) ପାଳିଆବିନ୍ଧାରେ ସାମନ୍ତ ରାଧାଚରଣ ଦାସ ପୂର୍ବ ପୁରୁଷମାନଙ୍କର ବାସଥିଲା । ଅବଧି ତାଙ୍କର ଘରଡିହ ବନାକୀର୍ଣ୍ଣ ପତିତ ଅବସ୍ଥାରେ ଅଛି ।

(ଡ) ବାଲେଶ୍ୱରର ଆଗାବଜାର ଆଗା ଜାତୀୟ ପଠାଣମାନଙ୍କ ଦ୍ୱାରା ସ୍ଥାପିତ । ତାଙ୍କର ଖୋଦିତ ପୋଖରୀ ଓ ମଜିଦ ଅବଧି ଅଛି ।

(ଢ) ମାନସିଂହବଜାର ରାଜା ମାନସିଂହଙ୍କ ଦ୍ୱାରା ସ୍ଥାପିତ । ସେ ଭଦ୍ରକରୁ ପଠାଣ ବିଜୟ ପରେ ଫେରିବା ସମୟରେ ବର୍ଷା କିଛିକାଳ ବାଲେଶ୍ୱରରେ (ଏହିଠାରେ) ଶିବିର ସ୍ଥାପନ କରିଥିଲେ । (ଖ୍ରୀ: ୧୫୭୬) ବର୍ତ୍ତମାନ ତାଙ୍କ ସୈନ୍ୟଦଳଭୁକ୍ତ ଉଗ୍ର କ୍ଷେତ୍ରୀମାନେ ଏଠାରେ ବାସ କରୁଅଛନ୍ତି ।

(ଣ) ବଟବୃକ୍ଷ ମୂଳସ୍ଥିତ ମହାଦେବଙ୍କ ନାମରେ ଏ ଗ୍ରାମର ନାମ 'ବଟେଶ୍ୱର' ହୋଇଅଛି । ଇଂରାଜଙ୍କ ପ୍ରଥମ ଅମଳ ଇଂରାଜ କର୍ମଚାରୀ ଅନେକ ବଂଗାଳୀ ଏଠାରେ ଅତି ସୁଖ ସ୍ୱଚ୍ଛନ୍ଦରେ ବାସ କରୁଥିଲେ ଓ ଦୁର୍ଗୋତ୍ସବ୍ୟାଦି କରୁଥିଲେ । ଏହାଙ୍କ ଦେଖାଦେଖି ବିଉଟୀ ନାୟକ ନାମକ ଏକ ଗ୍ରାମବାସୀ ଏକ ଉଡ଼ିଆ ଜ୍ୟୋତିଷ ମଧ୍ୟ ଶାକ୍ତମତରେ ଦୁର୍ଗୋତ୍ସବ ଓ କାଳୀପୂଜା ଆରମ୍ଭ କରିଥିଲେ । ଅବଧି ତାଙ୍କ ବଂଶଧରମାନେ ପୂର୍ବ ରୀତିରେ ପୂଜା କରିଆସୁଛନ୍ତି । ତେବେ ବାଧା ପଡ଼ିବାରୁ କେତେକବର୍ଷ ହେଲା ପଶୁବଳି ବନ୍ଦ ଅଛି । ଏହା ବାଲେଶ୍ୱର ମଧ୍ୟରେ ସର୍ବାପେକ୍ଷା ପୁରାତନ ପୂଜା ।

(ତ) ବିଖ୍ୟାତ ବଙ୍ଗଳା ଲେଖକ ଓ ଡେପୁଟି କଲେକ୍ଟର ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ପିତା ଯାଦବ ଚନ୍ଦ୍ର ନିମକିର ଦାରେଗା ହୋଇ ଏଠାରେ ବାସ କରୁଥିଲେ । ଉର୍ଦ୍ଧାରକ ଆଢ଼୍ୟଙ୍କ ଘର ତାଙ୍କ ଘର ଥିଲା । କେହିକେହି କହନ୍ତି ବଙ୍କିମଙ୍କ ଜନ୍ମ ବାଲେଶ୍ୱରରେ ହୋଇଥିଲା ।

(ଥ) ବଙ୍ଗଳାରୁ ଅନେକ ଅଶ୍ୱିନୀ ତନ୍ତୀ ଆସି ଏଠାରେ ବାସ କରୁଅଛନ୍ତି । ମାକୁ (କଣ୍ଡା) ଶବ୍ଦରୁ 'ମାକଲପୁର' ନାମ ହୋଇଅଛି । ଗୋଗଲ ସେନାପତି ମିରଜା ଅକିମଙ୍କ ନାମାନୁସାରେ 'ମିରଜା ପୋଖରୀ' ନାମ ହୋଇଅଛି ।

(ଦ) ମୋଗଲ କର୍ତ୍ତୃକ ଓଡ଼ିଶା ବିଜୟ ସମୟରେ ସୁବର୍ଣ୍ଣରେଖା ଓଡ଼ିଶା ଓ ବଂଗଳାର ସୀମାରୂପେ ପରିଚିତ ।

***

ଗ୍ରନ୍ଥ ପ୍ରଣେତା ଡ. ହରିଷ୍ଚନ୍ଦ୍ର ସରକାର ବାଲେଶ୍ୱର ସଂପର୍କରେ ଓଡ଼ିଆ ଭାଷାରେ ପ୍ରଥମେ ପଦ୍ୟାକାରରେ ଇତିହାସ ଲେଖିଥିଲେ । ୧୯୦୯ ମସିହାରେ ପ୍ରକାଶିତ ଏହି ଗ୍ରନ୍ଥକୁ ଏବର ପିଢ଼ି ଦେଖିବାର ସୁଯୋଗ ପାଇନଥିଲାବେଳେ କବି ଡ.ବ୍ରଜନାଥ ରଥ ଏହି ଦୁର୍ଲଭ ଗ୍ରନ୍ଥକୁ ତାଙ୍କ 'ବିଶ୍ୱ-ତାରା' ଗବେଷଣା ଗ୍ରନ୍ଥାଗାରରୁ ପୁନଃ ପ୍ରକାଶନ ପାଇଁ ପ୍ରଦାନ କରିଛନ୍ତି ।

୰ ହରିଷ୍ଚନ୍ଦ୍ର ସରକାର ଥିଲେ ଅଧୁନାତନ ବାଲେଶ୍ୱର ସହରସ୍ଥ ସୁଏଲପୁର ଗ୍ରାମର ଅଧିବାସୀ । ପ୍ରାୟ ୧୮୫୧-୫୨ ମସିହାରେ ତାଙ୍କର ଜନ୍ମ । ୧୮୬୮ ମସିହାରେ ଜିଲ୍ଲାସ୍କୁଲରୁ ମାଟ୍ରିକ୍ ପାସ୍ କରିଥିଲେ । ବାଲେଶ୍ୱର ଲୋକାଲ୍ ବୋର୍ଡ଼ର କିଛିଦିନ ଉପାଧ୍ୟକ୍ଷ ରହିଥିଲେ । ୧୯୦୯ ମସିହା ବେଳକୁ ପରମିଟଘାଟ ନିକଟସ୍ଥ 'ସାମନ୍ତ ପ୍ରେସ'ର ପରିଚାଳକ ରୂପେ ସେ କାର୍ଯ୍ୟ କରୁଥିଲେ । ଫକୀରମୋହନଙ୍କ 'ସମ୍ବାଦବାହିକା'ର ନବ ପର୍ଯ୍ୟାୟର ପ୍ରକାଶନ ଓ ସଂପାଦନାର କାର୍ଯ୍ୟଭାର ୰ ସରକାର ବହନ କରିଥିଲେ ।

ତାଙ୍କର ଅଭିଜ୍ଞତା ଓ ଭ୍ରମଣଲବ୍ଧ ଜ୍ଞାନ ଆଧାରରେ ରଚିତ '**ବାଲେଶ୍ୱର**' ପୁସ୍ତକ, ଅବିଭକ୍ତ ବାଲେଶ୍ୱର ଜିଲ୍ଲା ସଂପର୍କରେ ପ୍ରଥମ ଇତିହାସ । ଯାହା ୧୪ଅକ୍ଷରୀ ଛାନ୍ଦରେ ଲିଖିତ । ତାହାର ପୁନର୍ମୁଦ୍ରଣ କରି ଆମେ ଗବେଷକ, ଛାତ୍ରଛାତ୍ରୀ ଓ ଜନସାଧାରଣଙ୍କୁ ଏକ ଉପାଦେୟ ଗ୍ରନ୍ଥ ଉପହାର ଦେଉଛୁ ।

ଏହି ଗ୍ରନ୍ଥର ସଂପାଦନା ଦାୟିତ୍ୱ ନିର୍ବାହ କରିଥିବା ବିଶିଷ୍ଟ କବି ଡ.ବ୍ରଜନାଥ ରଥ ବାଲେଶ୍ୱର ନିବାସୀ । ଆଧୁନିକ ଓଡ଼ିଆ କାବ୍ୟ-କବିତାର ଅନ୍ୟତମ ସୁଯୋଗ୍ୟ ବିନ୍ଧାଣୀ କବି ରଥ ଏକାଧାରରେ ଜଣେ ବିଶିଷ୍ଟ କବି, ଅନୁବାଦକ ଓ ସୁସଂପାଦକ । ତାଙ୍କର ସଂପାଦନାରେ ବହୁ ଉପାଦେୟ ସଂକଳନ ଓଡ଼ିଆ ବାଣୀ ଭଣ୍ଡାରକୁ ଋଦ୍ଧିମନ୍ତ କରିଛି ।

ପ୍ରକାଶକ

ସ୍ୱର୍ଣ୍ଣଶ୍ରୀ ପ୍ରକାଶନୀ